ଉତ୍କଳ ଭାରତୀ

# କୁନ୍ତଳାକୁମାରୀ ସାବତ

ଜନ୍ମ ଶତବାର୍ଷିକୀ ବିଶେଷାଙ୍କ



## ଓଡ଼ିଶା ଲେଖିକା ସଂସଦ

ଭୁବନେଶ୍ୱର

# ଉତ୍କଳ ଭାରତୀ

# କୁନ୍ତଳା କୁମାରୀ ସାବତ

## ଜନ୍ମ ଶତବାର୍ଷିକୀ ବିଶେଷାଙ୍କ (୧୯୦୦-୨୦୦୦)

**ମୁଖ୍ୟ ସଂପାଦିକା :**

ବୀଣାପାଣି ମହାନ୍ତି

**ସଂପାଦିକା :**

ଡ: ଅର୍ଚ୍ଚନା ନାୟକ

**ସଂପାଦନା ମଣ୍ଡଳୀ :**

ମେନଜ ଦେବୀ

ଡ: ଶକୁନ୍ତଳା ବଳିଆର ସିଂହ



ଓଡ଼ିଶା ଲେଖିକା ସଂସଦ

ଭୁବନେଶ୍ୱର

# [illegible] କର୍ମକର୍ତ୍ତ୍ରୀବୃନ୍ଦ

ସଭାପତି

**ବୀଣାପାଣି ମହାନ୍ତି**

ଉପ ସଭାପତି

**ବସନ୍ତ ଦେବୀ**

**ଡ: ଅର୍ଚ୍ଚନା ନାୟକ**

ସଂପାଦିକା

**ଡ: ଶକୁନ୍ତଳା ବଳିଆର ସିଂହ**

ସଙ୍ଗଠନ ସଂପାଦିକା

**ମନ୍ଦାକିନୀ ପାଣିଗ୍ରାହୀ**

ଯୁଗ୍ମ ସଂପାଦିକା

**ଡ: ଜ୍ୟୋତ୍ସ୍ନା ମହାପାତ୍ର**

**ପ୍ରବୀଣା ମହାନ୍ତି**

କୋଷାଧ୍ୟକ୍ଷା

**ଗୋଲାପ ମଞ୍ଜରୀ କର**

## କାର୍ଯ୍ୟକାରୀ କମିଟି

ନିର୍ମଳା ମହାନ୍ତି
ଶୈଳଜା କୁମାରୀ ଅପରାଜିତା ମହାନ୍ତି
ଡ: ସଂଘମିତ୍ରା ମିଶ୍ର
ଜ୍ୟୋତ୍ସ୍ନା ରାଉତରାୟ
ବୀଣା ପଟ୍ଟନାୟକ
ଚନ୍ଦ୍ରମଣି ନାରାୟଣ ସ୍ୱାମୀ
ସୁନନ୍ଦା ପଟ୍ଟନାୟକ
ପ୍ରଭା ପଟ୍ଟନାୟକ
ଜୟନ୍ତୀ ରଥ
ବୀଣା ମହାପାତ୍ର
ଶରତ କୁମାରୀ ଆଚାର୍ଯ୍ୟ
ଭାରତୀ ମହାନ୍ତି

## ଆବାହିକା ବୃନ୍ଦ

| | |
|---|---|
| ଲୁମ୍‌ଝୁମ୍ ନାୟକ | (କଟକ) |
| ପ୍ରମିଳା ଆଚାର୍ଯ୍ୟ | (ପୁରୀ) |
| ସଂଯୁକ୍ତା ରାଉତ | (ବାଲେଶ୍ୱର) |
| ଯଶୋଧାରା ଶତପଥୀ | (ବ୍ରହ୍ମପୁର) |
| ବିଜନବାଳା କାଣ୍ଡି | (ସମ୍ବଲପୁର) |
| ଅଳକା ଚାନ୍ଦ | (ରାଉରକେଲା) |
| ପ୍ରଫୁଲ୍ଲତା ମହାପାତ୍ର | (ଜଗତସିଂହପୁର) |
| ପଙ୍କଜିନୀ ଦାଶ | (ଢେଙ୍କାନାଳ) |
| ଆଦର ମଣି ବରାଳ | (ଖୋର୍ଦ୍ଧା) |
| ଅପର୍ଣ୍ଣା ମହାନ୍ତି | (କେନ୍ଦ୍ରାପଡ଼ା) |
| ପ୍ରତିଭା ସୁନ୍ଦରୀ ଓତା | (ବାରିପଦା) |
| ଜୟନ୍ତୀ ବିଶ୍ୱାଳ | (ଯାଜପୁର) |

ରମାକାନ୍ତ ରଥ
ସଭାପତି
Ramakanta Rath
President



साहित्य अकादेमी
रवीन्द्र भवन, 35 फ़ीरोज़शाह मार्ग, नई दिल्ली-110 001
तार: साहित्यकार दूरभाष: 3386623 / 3386626
फ़ैक्स: 091-11-3382428

Sahitya Akademi
(National Academy of Letters)
Rabindra Bhavan, 35 Ferozeshah Road, New Delhi-110 001
Gram Sahityakar Phone : 3386623 / 3386626
Fax : 091-11-3382428

## - ବାର୍ତ୍ତା -

ଅନେକ ବର୍ଷରୁ ଅଛେ ନୂଆ ହେଉ, ବର୍ଷକରେ ଅଛୁ ନୂଆ ହେଉ, ଅନୁଦିନ କୁନ୍ତଳାକୁମାରୀ ଏକ ଉଜ୍ଜ୍ୱଳ ଆବିର୍ଭାବ, ଯେଉଁ ନ ସରୁଥିବା ପ୍ରାଣଶକ୍ତିର ଅଧିଷ୍ଠାତ୍ରୀ। ଓଡ଼ିଶାର ଲେଖିକାମାନଙ୍କର ତିନିଓ, ଆତ୍ମପ୍ରତ୍ୟୟର ଆବିର୍ଭାବ ଚାହିଁଲେ, ସେହି ସେମାନଙ୍କର ଚିନ୍ତିତ ହେବାର ପ୍ରେରଣା। ପୁଣି ସେ ହିଁ ଏକ ପ୍ରଶ୍ନଚିହ୍ନ — ଲେଖିକା ଓ ଲେଖକ ଆଜିଠୁ ଖୋଜିବାର କଥା, ସେମାନଙ୍କର ସମ୍ଭାବନା ପୃଥକ୍, ଏ ଦୃଷ୍ଟିକୋଣରୁ ଅନ୍ୟ କାହାର ଚିନ୍ତା ଜାଗୋଇଁଲା ପାଇଁ ବହି ଓଡ଼ିଶା ଲେଖିକା ସଂସଦ, ଏବେ ତୁମେ, ଏବେ ଚରିତାର୍ଥ ହୋଇପାରିଥାନ୍ତା ?

ରମାକାନ୍ତ ରଥ

ଭୁବନେଶ୍ୱର
ଫେବ୍ରୁଆରୀ ୮, ୨୦୦୦

Residence . A-50, Kharavela Nagar, Unit-III, Bhubaneswar-751 001 (Orissa) Tel : (0674) 400474, 415600, 404332

ରବିନାରାୟଣ ସେନାପତି
କମିଶନର ତଥା ଶାସନ ସଚିବ
R. N. Senapati, I.A.S.
Commissioner Cum Secretary
to Government
Tourism, Culture Department
Sports & Y.S.





## - ବାର୍ତ୍ତା -

ଭୁବନେଶ୍ୱର
ତା୦୨-୦୨-୨୦୦୦ରିଖ

ଓଡ଼ିଶା ଲେଖିକା ସଂସଦ ଆନୁକୂଲ୍ୟରେ ଓଡ଼ିଶାର ଯଶସ୍ୱିନୀ ନାରୀ କବି କୁନ୍ତଳାକୁମାରୀ ସାବତଙ୍କ ଜନ୍ମ ଶତବାର୍ଷିକୀ ଉତ୍ସବ ପାଳନ କରାଯାଉଅଛି ଏବଂ ଏହି ଉପଲକ୍ଷେ ଏକ ସ୍ମରଣିକା ପ୍ରକାଶ ପାଉଥିବା ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ । ନିଜର ସ୍ୱଳ୍ପ ଜୀବନକାଳ ମଧ୍ୟରେ ଉତ୍କଳର ସାରସ୍ୱତ ମନ୍ଦିରରେ ଜଣେ ପୂଜାରିଣୀ ଭାବରେ କୁନ୍ତଳା କୁମାରୀ ଯେଉଁ ମହାର୍ଘ ଅର୍ଘ୍ୟ ନିବେଦନ କରିଥିଲେ, ସେଥିପାଇଁ ଚିର ବନ୍ଦନୀୟା ହୋଇ ରହିବେ । ବିପୁଳ ପ୍ରତିଭାର ଅଧିକାରିଣୀ କୁନ୍ତଳାକୁମାରୀଙ୍କ କାବ୍ୟ କବିତା ଚିରଦିନ ଓଡ଼ିଆ ଜାତିକୁ ଅନୁପ୍ରାଣିତ କରୁଥିବ, ଏଥିରେ ସନ୍ଦେହ ନାହିଁ । ତାଙ୍କର ବିପୁଳ ସାରସ୍ୱତ ପ୍ରତିଭା ପ୍ରତି ମୁଁ ଗଭୀର ଶ୍ରଦ୍ଧାଞ୍ଜଳି ଜଣାଇବା ସହିତ ଜନ୍ମଶତବାର୍ଷିକୀ ପାଳନର ସମସ୍ତ ସଫଳତା କାମନା କରୁଛି ।

ରବିନାରାୟଣ ସେନାପତି
ସ୍ୱାକ୍ଷର

# ସଂପାଦକୀୟ

## ଉତ୍କଳଭାରତୀ କୁନ୍ତଳାକୁମାରୀ : ଏକ ଶ୍ରଦ୍ଧାଞ୍ଜଳି

୧୯୦୦ ମସିହା ଫେବୃୟାରୀ ମାସ ୮ ତାରିଖରେ ଓଡ଼ିଶାର ବିଛିନ୍ନାଂଚଳ ବସ୍ତର ଜିଲ୍ଲାରେ ଜନ୍ମଗ୍ରହଣ କରିଥିବା କୁନ୍ତଳାକୁମାରୀ ସାବତ ଓଡ଼ିଆ ସାହିତ୍ୟର ଇତିହାସରେ ଏକ ବିସ୍ମୟକର ନାରୀପ୍ରତିଭା । ସେ ଥିଲେ ଏକ ଜୀବନ୍ତ ବ୍ୟକ୍ତିତ୍ୱ । ଯାହାଙ୍କର ବ୍ୟକ୍ତିତ୍ୱର କିଛି ଅଂଶମାତ୍ର ତାଙ୍କ ରଚିତ କାବ୍ୟ କବିତାରେ ପ୍ରକାଶ ପାଇଥିଲା । ତାଙ୍କ ସାହିତ୍ୟ ସୃଷ୍ଟି ଅପେକ୍ଷା ତାଙ୍କର ଜୀବନକାହାଣୀ ଥିଲା ଅଧିକ ମହତ୍ତ୍ୱପୂର୍ଣ୍ଣ । କୌଣସି ଗତାନୁଗତିକ ରୀତିରେ ଗତିଶୀଳ ନ ହୋଇ ବହୁ ଘାତପ୍ରତିଘାତ, ସଂକଟ ଓ ସଂଘର୍ଷର କଣ୍ଟକମୟ ପଥକୁ ହିଁ ବରଣ କରିଥିଲା ତାଙ୍କ ଜୀବନର ଧାରା ।

ସର୍ବ ଭାରତୀୟ ସ୍ତରରେ ବୋଧହୁଏ ସେ ଏକମାତ୍ର ନାରୀ, ଯାହାଙ୍କର ବ୍ୟକ୍ତିତ୍ୱରେ ଏପରି ବହୁମୁଖୀନତା ପ୍ରକାଶ ପାଇଛି । ସେ ଏକାଧାରରେ ଥିଲେ କବି, ଔପନ୍ୟାସିକା, ପ୍ରାବନ୍ଧିକା, ଚିକିତ୍ସାବିତ୍, ସମାଜସେବୀ, ବାଗ୍ମୀ ଓ ବିପ୍ଳବିଣୀ ପ୍ରଭୃତି । ସେହି ସମୟରେ ଏହି ତେଜସ୍ୱିନୀ ଓଡ଼ିଆଣୀ ଜଣକ All India Ariyan Youth leaugeର President. ଆର୍ଯ୍ୟମହିଳା ମହାସମ୍ମେଳନ, ନିଖିଳ ଉତ୍କଳ ନାରୀ ସମିତି, ଦିଲ୍ଲୀର ହିନ୍ଦୀ ସାହିତ୍ୟ ସଭାର ସଭାପତି ଭାବରେ ଗୁରୁତ୍ୱପୂର୍ଣ୍ଣ ଭୂମିକାମାନ ନିର୍ବାହ କରିଥିଲେ । ତାଙ୍କଦ୍ୱାରା ପ୍ରତିଷ୍ଠିତ 'ଭାରତୀ ତପୋବନ' ଥିଲା ଓଡ଼ିଆ ସାହିତ୍ୟ ସଂସ୍କୃତି ଓ କଳାର ବିକାଶ କ୍ଷେତ୍ରେ ଏକ ଉତ୍ସର୍ଗୀକୃତ ସାରସ୍ୱତ ଅନୁଷ୍ଠାନ ।

ଓଡ଼ିଶା ଓ ଓଡ଼ିଆ ସାହିତ୍ୟ ପାଇଁ ସେ ଅନେକ ସ୍ୱପ୍ନ ଦେଖିଥିଲେ ଓ ସେ ସ୍ୱପ୍ନ ସବୁକୁ ବାସ୍ତବରେ ରୂପାୟିତ କରିବା ପାଇଁ କୁନ୍ତଳାକୁମାରୀ ଆନ୍ତରିକ ପ୍ରଚେଷ୍ଟା କରିଥିଲେ । କିନ୍ତୁ ମାତ୍ର ଅଠତିରିଶ ବର୍ଷ ବୟସରେ ସେ ଅକାଳ ମୃତ୍ୟୁବରଣ କରିବା ଦ୍ୱାରା ତାଙ୍କର ମହତ ଯୋଜନାମାନ

ଅସଂପୂର୍ଣ୍ଣ ରହିଗଲା । ତଥାପି ତାଙ୍କ ଜୀବନର ସେହି ସ୍ୱଳ୍ପକାଳ ମଧ୍ୟରେ ସେ ସାହିତ୍ୟ, ଚିକିତ୍ସା ସଂସ୍କାର, ସମାଜସେବା, ସଂଗଠନ ଓ ଦେଶସେବା କ୍ଷେତ୍ରରେ ଯେଉଁ ଅମୂଲ୍ୟ ଅବଦାନ ଦେଇଛନ୍ତି ତାହାକୁ ଓଡ଼ିଆ ଜାତି ଚିରକାଳ ଶ୍ରଦ୍ଧାର ସହ ସ୍ମରଣ ରଖିବ ।

ଅନ୍ୟାନ୍ୟ ସଂଗଠନ ମୂଳକ କାର୍ଯ୍ୟକ୍ରମ ସହ ଓଡ଼ିଶା ଲେଖିକା ସଂସଦ ଲେଖିକାମାନଙ୍କର ଆଦ୍ୟ ପ୍ରେରଣା କୁନ୍ତଳାକୁମାରୀଙ୍କର ଜୟନ୍ତୀ ପ୍ରତିବର୍ଷ ପାଳନ କରିଆସୁଛି । ସୁଖର କଥା ଓଡ଼ିଶା ସାହିତ୍ୟ ଏକାଡ଼େମୀ ଏହି ଉତ୍ସବ ପାଳନ କରିବାରେ ଆମକୁ ସବୁପ୍ରକାର ସହଯୋଗ ପ୍ରଦାନ କରୁଥିବାରୁ ମୁଁ ସଂସଦ ପକ୍ଷରୁ ଏକାଡ଼େମୀର କର୍ତ୍ତୃପକ୍ଷଙ୍କୁ ସାଧୁବାଦ ଜଣାଉଛି ।

ଉତ୍କଳଭାରତୀ କୁନ୍ତଳାକୁମାରୀ ଜନ୍ମ ଶତବାର୍ଷିକୀ ବିଶେଷାଙ୍କଟିର ପ୍ରକାଶନ ନିମନ୍ତେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ସହାୟତା ପ୍ରଦାନ କରିଥିବାରୁ ଆମେ ଉକ୍ତ ଅନୁଷ୍ଠାନର କର୍ତ୍ତୃପକ୍ଷଙ୍କ ନିକଟରେ ବିଶେଷ ଭାବରେ କୃତଜ୍ଞ ରହିଲୁ ।

ବିଶେଷ ଆନନ୍ଦର ବିଷୟ ହେଉଛି ଆମ ସଂସଦର ଅନ୍ୟତମ ସଦସ୍ୟା ଶ୍ରୀମତୀ ଚନ୍ଦ୍ରମଣି ନାରାୟଣ ସ୍ୱାମୀଙ୍କ ଦ୍ୱାରା କୁନ୍ତଳାକୁମାରୀଙ୍କର କେତେକ ନିର୍ବାଚିତ କବିତାର ଇଂରାଜୀ ଅନୁବାଦ ଏକ ପୁସ୍ତକ ଆକାରରେ ଆଜି ଆମପ୍ରକାଶ କରୁଛି ।

ଓଡ଼ିଶା ଲେଖିକା ସଂସଦର ସମସ୍ତ ଶୁଭେଚ୍ଛୁ ବନ୍ଧୁମାନଙ୍କୁ ଆମେ ଏହି ଅବସରରେ ସ୍ମରଣ କରୁଛୁ ଓ ସେମାନଙ୍କର ସଶ୍ରଦ୍ଧ ସହଯୋଗ ନିମନ୍ତେ ଧନ୍ୟବାଦ ଜଣାଉଛୁ ।

ଡଃ ଅର୍ଚ୍ଚନା ନାୟକ
ସଂପାଦିକା

# ସୂଚୀପତ୍ର

ସଂପାଦକୀୟ


| | ବିଷୟ | | ପୃଷ୍ଠା |
|---|---|---|---|
| | ଉତ୍କଳ ଭାରତୀ କୁନ୍ତଳାକୁମାରୀଙ୍କର ସୃଷ୍ଟିରୁ କିୟଦାଂଶ | | |
| | **କବିତା** | | |
| ୧. | ମଣିଷ ଧାତୁ | | ୦୯ |
| ୨. | ଭାରତ ଲଳନା | | ୯-୧୦ |
| ୩. | ମୋହନ | | |
| | **ଉପନ୍ୟାସ** | | |
| ୪. | 'ପରଶମଣି' ଉପନ୍ୟାସର କିଛି ଅଂଶ | | ୧୧-୧୨ |
| | **ପ୍ରବନ୍ଧ** | | |
| ୫. | ଦିଲ୍ଲୀଚିଠି (୫) | | ୧୩-୨୨ |
| | **ପ୍ରବନ୍ଧ** | | |
| ୧. | ଜାତିର ଚିଦାକାଶରେ ଏକ ଉଜ୍ଜ୍ୱଳ ଧ୍ରୁବତାରା | - ମହାପାତ୍ର ନୀଳମଣି ସାହୁ | ୨୩-୨୪ |
| ୨. | କୁନ୍ତଳାକୁମାରୀଙ୍କର କବିତାର ରହସ୍ୟବାଦୀ ସ୍ୱର | - ସୌଦାମିନୀ ନନ୍ଦ | ୨୫-୩୩ |
| ୩. | ନାରୀପ୍ରତିଭା ବିପ୍ଳବିଣୀ କୁନ୍ତଳା କୁମାରୀ | - ସାନନ୍ଦା ପଟ୍ଟନାୟକ | ୩୪-୩୫ |
| ୪. | ବିଶ୍ୱାସର ଦର୍ପଣରେ ସମୟର ମୁହଁ | - ଡଃ ସଂଘମିତ୍ରା ମିଶ୍ର | ୩୬-୪୩ |
| ୫. | ନାରୀତ୍ୱ ଓ କବିତ୍ୱର ଅପୂର୍ବ ସମନ୍ୱୟ ..... | - ଜ୍ୟୋତ୍ସ୍ନା ରାଉତରାୟ | ୪୪-୪୮ |
| ୬. | ଜନ୍ମ ଶତବାର୍ଷିକୀରେ ଉତ୍କଳ ଭାରତୀ ....... | - ଡଃ ଶକୁନ୍ତଳା ବେହିଆର ସିଂହ | ୪୯-୫୧ |
| ୭. | କୁନ୍ତଳାଙ୍କ ଉପନ୍ୟାସରେ ନାରୀ ପରମ୍ପରା ଓ ପୁରୋଦୃଷ୍ଟି | - ଡଃ ରଶ୍ମିତା ନାୟକ | ୫୨-୬୦ |
| ୮. | ବିଂଶୋତ୍ତର ଶତାବ୍ଦୀରେ ନାରୀ କବି କୁନ୍ତଳା | - ଡଃ ଇନ୍ଦିରା ପଟ୍ଟନାୟକ | ୬୧-୬୩ |
| ୯. | କୁନ୍ତଳାଙ୍କର କାବ୍ୟମାନସ ଏକ ଅଧ୍ୟୟନ | - ପ୍ରେମଲତା ଦେବୀ | ୬୪-୬୬ |
| ୧୦. | କୁନ୍ତଳା ଏକ ବହୁମୁଖୀ ପ୍ରତିଭା | - ଡଃ. ନିବେଦିତା କୁମାରୀ ମହାନ୍ତି | ୬୮-୬୯ |
| ୧୧. | ଅନନ୍ୟା | - ଭାରତୀ ମହାନ୍ତି | ୭୦-୭୨ |
| ୧୨. | ଓଡ଼ିଆ ସାହିତ୍ୟରେ କୁନ୍ତଳାକୁମାରୀଙ୍କ ଅମଳିନ ପ୍ରତିଭା | - ବୀଣା ପଟ୍ଟନାୟକ | ୭୩-୭୬ |

୧୩. ଯଶସ୍ୱିନୀ କୁନ୍ତଳା କୁମାରୀଙ୍କ ସ୍ମରଣେ - ପ୍ରଶାନ୍ତି ମିଶ୍ର ୭୩-୭୮

୧୪. କୁନ୍ତଳାକୁମାରୀ ସୃଷ୍ଟି ସମୀକ୍ଷା - ଅଳକା ଚାନ୍ଦ ୭୯-୮୫

୧୫. ଏକ ଅମ୍ଳାନ ପ୍ରତିଭା - ନୀରଦ ପ୍ରଭା ପଟ୍ଟନାୟକ ୮୬-୮୯

୧୬. ପ୍ରାତିମୟୀ ଜାତିକବି ଉତ୍କଳ ଭାରତୀ କୁନ୍ତଳାକୁମାରୀ - ସୁଶ୍ରୀ ସଂଯୁକ୍ତା ମହାପାତ୍ର ୯୦-୯୮


## କବି କୁନ୍ତଳା କୁମାରୀଙ୍କ ଉଦ୍ଦେଶ୍ୟରେ ନିବେଦିତ

# କବିତାଞ୍ଜଳି


୧. ତୁମକୁ ଡାକୁଛୁ, ମା' ବୋଲି - କନକ ଦେବୀ ୯୦-୧୦୦

୨. ଅପୂର୍ବ ଫୁଲଦାନୀରେ - ପ୍ରତିଭା ଶତପଥୀ ୧୦୦

୩. ଥାରେ କୁନ୍ତଳା କୁହ ସତରେ - ଜୟନ୍ତୀ ରଥ ୧୦୨

୪. କୁନ୍ତଳା କୁମାରୀ - ଡାକ୍ତର ସରୋଜିନୀ ଷଡ଼ଙ୍ଗୀ ୧୦୩

୫. ଯଶସ୍ୱିନୀ - ଗିରିଜା ମଞ୍ଜରୀ ପାଢ଼ୀ ୧୦୪

୬. ଦ୍ୱିତୀୟ ଈଶ୍ୱରୀ - ସୁଷମା ମିଶ୍ର ୧୦୫

୭. କୁନ୍ତଳା କୁମାରୀ - ନୀରଦ ପ୍ରଭା ସିଂହ ସାମନ୍ତ ୧୦୫

୮. ବନ୍ଦନୀୟା - ମିନତି ଷଡ଼ଙ୍ଗୀ ୧୦୬

୯. ଭେଟ - ପ୍ରତିଭା ପରିଡ଼ା ୧୦୭-୧୦୮

୧୦. THE STAR THAT NEVER SETS - Chandramoni Narayanaswamy ୧୦୯

## ଉତ୍କଳ ଭାରତୀ କୁନ୍ତଳାକୁମାରୀଙ୍କ ସୃଷ୍ଟିରୁ କିୟଦାଂଶ

# ମଣିଷ ଭାଇ

ଶୁଣ ହେ ମଣିଷ ଭାଇ !
ଝୁରି ମରିବାକୁ ବୁଡ଼ି ମରିବାକୁ
ମଣିଷ ଜନମିନାହିଁ ।
ଶତ ହତାଶ୍ୱାସେ ସାରିବ ସଂସାର
ନିରାଶେ ନିବିଡ଼ ଅନ୍ଧାରେ,
ଚିର ଶୃଙ୍ଖଳିତ, ଲାଞ୍ଛିତ, ବଞ୍ଚିତ,
ପୀଡ଼ିତ କଷଣ କାରାରେ,
ଏ ନୁହେ ମାନବ ନିୟତି,
ଧ୍ୱଂସର ଯାତ୍ରୀ, ମୃତ୍ୟୁର ଧାତ୍ରୀ
ନୁହେ ଏ ବିଶାଳ ଜଗତୀ ।
ଶୁଣ ହେ ମଣିଷ ଭାଇ !
ଅମୃତ ଦୀପ୍ତି ସନ୍ତାନ ତୁମେ, ମରଣ ତୁମର କାହିଁ ?



# ଭାରତ - ରମଣୀ

ସଫଳ ଜନମ, ସଫଳ ଜୀବନ,
ମୁଁ ପରା ଭାରତ-ରମଣୀ,
ମୋ ତ୍ୟାଗ ପୁଣ୍ୟ ସହିଷ୍ଣୁତା ଗୁଣେ
ମୋହିବି ନିଖିଳ ଧରଣୀ ।
ନାରୀତ୍ୱର ପୂଜା, ନାରୀତ୍ୱେ ଆଦର
ଲଭି ଶ୍ରେଷ୍ଠାସନ ଜାୟା ଜନନୀର,
ବିଧି ବିଧାନେ ମୁଁ ଶକତି, ସାବିତ୍ରୀ,
ମୁଁ ଶାରଦା, ଲକ୍ଷ୍ମୀରୂପିଣୀ ।
ପ୍ରବୃତ୍ତି ନୁହେଁ ମୋ' ନିବୃତ୍ତି ପନ୍ଥା,
ସଂଯମ, ଶାନ୍ତି ଜୀବନେ ଗୁନ୍ଥା,
ବୈଧବ୍ୟ ବସନେ, ଚିତାର ଦହନେ;
ମୂର୍ତ୍ତିମତୀ ଧର୍ମଧାରିଣୀ ।

ଆତ୍ମଶକ୍ତି ଲୀଳା ନର କଳେବରେ
ଉଠିବ ବିଶ୍ୱ କଟାକ୍ଷ ମାତରେ,
ମୁଁ ତ ଆଦ୍ୟାଶକ୍ତି
ଭକତି ଆରତି ✤ ଅନ୍ତିମ ମୁକ୍ତି ସରଣୀ ।

## ଚମ୍ପାଦଳ

ଜାଗେ ଆଜି ମୋର ନବୀନ ପରାଣେ
ନବ ଜୀବନ ମୂର୍ଚ୍ଛନା,
ଅନନ୍ତ ଉଦାର ଆକାଶେ ଅନାଇ
ପ୍ରାଣେ ଚମକେ ଚେତନା ।
ଶିରା ଶିରାରେ ଖେଳେ ବିଜୁଳି,
ନେତ୍ରେ କର୍ମ୍ମକ୍ଷେତ୍ର ଉଠେ ଉଜ୍ଜ୍ୱଳି,
ଶୁଭେ ଶଙ୍ଖସ୍ୱନ କର୍ଣ୍ଣରସାୟନ,
ଜାଗେ ଶୁଭ କର୍ମ୍ମ ପ୍ରେରଣା ।
ସେ କି ଆଲୋକ ! ସେ କି ଝଲକ !
ଜ୍ୱଳିଉଠେ ପରା ବ୍ୟୋମ ଭୂଲୋକ ;
ଟାଣେ ମୋ' ପ୍ରାଣ, ବୁଦ୍ଧେ ମୋ' ଜ୍ଞାନ,
ଶୁଭଇ କେବଳ "ସାଧନା" ।
କିଏ କହେ ବିଶ୍ୱ ବିରାଟ ଛଳନା,
ବୃଥା ମାୟାର ବନ୍ଧନ,
ମୁଁ ଦେଖେଁ ସୁନ୍ଦର ଏ ବିଶ୍ୱ ଉଦାର,
ଅନନ୍ତ ପ୍ରେମନନ୍ଦନ ।
ବିଶ୍ୱ ମୋର ଶୁଭକରମ ଭୁବନ,
କରମ ଲାଗି ମୁଁ ଲଭିଛି ଜନମ,
ମରଣ ନୁହେ ମୋ ଚିର ଅବସାନ,
ଆରମ୍ଭ ନବୀନ ଜୀବନ ।
ଏ ତ ନୁହେ ଶେଷ, ଏ ତ ନୁହେ କ୍ଳେଶ,
ଏ ନୁହେ ବିଦେଶ, ଏ ମୋ' ପୁଣ୍ୟ ଦେଶ,
ହୋଇ କର୍ମ୍ମରତ ହେବି ମୁଁ ଉନ୍ନତ,
ଏ ନୁହେ ଅସାର ସ୍ୱପନ ।
ଜୀବନ ନୁହେ ମୋ ସପନ ଛଳନା,
ଜୀବନ ଆନନ୍ଦମୟ ହେ !

କରମଲାଗି ଜନମ ଲଭିଛି,
କରମେ ଲଭିବି ଜୟ ହେ । ଧ୍ରୁ ।
ଶୁଭ କରମେ ହୋଇବି ଛିଡା,
ବାଧୁ ଯେତେ ମୋତେ ଯାତନା ପୀଡ଼ା,
କରମ ମୋହର ଜପମନ୍ତ୍ର ସାର
ଜ୍ଞାନ ଧ୍ୟାନ ସୁଖମୟ ହେ । ୧ ।
ନ ଚାହେଁ ଆଉ ଅସାର ମୁକ୍ତି,
ଶୁଭକର୍ମ୍ମ ଲାଗି ଯାଗେ ନବଶକ୍ତି,
କର୍ମ ମୋ ଭକତି, କର୍ମ ମୋ ଆରତି,
କର୍ମ ଶାନ୍ତି ବରାଭୟ ହେ । ୨ ।
ପ୍ରଭାତ ଲୋହିତ କନକ କାନ୍ତିରେ
ରଞ୍ଜିତ ରାଜୀବ-ବଦନେ
ଓହ୍ଲାଇ ଆସେ କେ ଫୁଲବାସ-ଭରା
ମୃଦୁଳ ମଳୟ ପବନେ ?
ମୃଦୁ ଅନ୍ଧକାରେ ଶୋଭେ ଶୁକତାରା,
ସେ କି ସ୍ୱରଗର ସ୍ୱଚ୍ଛ ସୁଧାଧାରା !
ମୋ ମନୋନନ୍ଦନ ପାରିଜାତ ପରା
ଫୁଟିଛି ମୋ' ପ୍ରେମ-କାନନେ । ୧ ।
ଚରଣତଳକୁ ଦେବି ମୁଁ ସଜାଡ଼ି
ବ୍ୟାକୁଳ-ବାସନା-ବେଦନା ଅଜାଡ଼ି,
ଛାଡୁ ମୋ' ଚେତନା, ବୁଡୁ ମୋ' ଯାତନା
ପଙ୍କଜପୟର ଚୁମ୍ବନେ ।
ଫୁଲ ପରି ଫୁଟିଉଠିବି ଆଦରେ,
ଥରେ ଯେବେ ଛୁଇଁଯିବେ ସେ ପାଦରେ,
ଝରି ଝରି ମଧୁ-ହୃଦ- କୋକନଦୁଁ
ମୋହିବ ସରବ ଭୁବନେ ।

✤

# "ପରଶମଣି" ଉପନ୍ୟାସର କିଛି ଅଂଶ

## -୨-

ବାଡ଼ିପଟ ଘୋର ଅନ୍ଧାର; ଆଉ ଲଳିତାର ହୃଦୟ ତଦପେକ୍ଷା ଅନ୍ଧକାର। ଆକାଶ ନକ୍ଷତ୍ରଖଚିତ; କିନ୍ତୁ ଲଳିତାର ହୃଦୟ ଆଶାଲୋକ ଶୂନ୍ୟ। ନିରାଶ ହୃଦୟର ବେଦନା ଘେନି ଲଳିତା ଆସି ପୋଖରୀକୂଳରେ ବସିଲା। ଆଜି ତାହାର ବେଦନା ଅସହ୍ୟ। ବଡ଼ ଗଭୀର ଗୋଟିଏ ଦୀର୍ଘଶ୍ୱାସରେ ହୃଦୟନିହିତ ବ୍ୟଥାର ପରିମାଣ ଜଣାଇ ସେ ଆକାଶକୁ ଚାହିଁଲା। ପ୍ରକୃତି ନିସ୍ତବ୍ଧ; ସେ ନିସ୍ତବ୍ଧତା ମଧ୍ୟରେ ପବନର ସର ସର ଶବ୍ଦ ବଡ଼ ମର୍ମସ୍ପର୍ଶୀ, ବଡ଼ କରୁଣ। ଲଳିତାର ମନେ ହେଲା, ପ୍ରକୃତି କାନ୍ଦୁଛି । ତାହାର କାନ୍ଦଣାରେ ଗଛପତ୍ର କାନ୍ଦୁଛନ୍ତି, ତାହାର ବ୍ୟଥାରେ ପବନ ବ୍ୟଥିତ, ଆକାଶରୁ ବ୍ୟଥାର ଶିଶିର ଝରି ପଡୁଛି। ଆଜି ସମଗ୍ର ବିଶ୍ୱ ମଧ୍ୟରେ ସେ ଏକା, ତାହାର ବିରାଟ ଶୂନ୍ୟତାରେ ଆଜି ସେ ଆତ୍ମହରା। ଜଗତରେ ଏପରି ଜଣେ ନାହିଁ, ଯେ ତା' ଦୁଃଖ ବୁଝିବ; ଏପରି ମନୁଷ୍ୟଟିଏ ନାହିଁ, ଯେ ତାହାର ବେଦନାରେ ସହାନୁଭୂତି କରିବ। ସେ ଏକାବେଳେ ନିଃସଙ୍ଗ, ନିରାଶ୍ରୟ । ଆଃ ! ଏତେ ଦୁଃଖ ତା' କପାଳରେ ଥିଲା, ଏତେ କଷ୍ଟ ! ବାପମା'ର ଗେଲବସର ଝିଅ, ଆଦରର ସୀମା ନଥିଲା, ସୁଖର ଅନ୍ତ ନ ଥିଲା, ସେ ପୁଣି ଆଜି ବାର ଲୋକର ବାର ଗଞ୍ଜଣାରେ ବ୍ୟଥିତା। ଦାସୀ ପରି ଖଟି ଖଟି ସୁଦ୍ଧା, ହାଡ଼ରୁ ମାଂସ ଝଡ଼ାଇ ସୁଦ୍ଧା, କାହାରି ମନ ପାଇଲାନାହିଁ। କିଏ ପଦେ 'ଆହା' ବୋଲି ତୁଣ୍ଡ ଦି'ଖଣ୍ଡ କଲେନାହିଁ। ସମସ୍ତେ ଶତ୍ରୁ ସମସ୍ତେ ନିଷ୍ଠୁର, ସମସ୍ତେ ପାଷାଣ। ଆଉ ସ୍ୱାମୀ, ଯାହା ଆଶାରେ, ଯାହାର ପ୍ରେମଆକାଙ୍କ୍ଷାରେ, ଯାହାରି ଲାଗି ସେ ସବୁ ଦୁଃଖ ସହିଲା, ଗାଳିକୁ ଚନ୍ଦନ କଲା, ମାଡ଼କୁ ଭୂଷଣ କଲା, ପିଠି ପତାଇ ଖରା, କାକର, ବର୍ଷା ସହିଲା, ଦାସୀ ପୋଇଲି ପରି ଖଟିଲା, ସେ ଶେଷକୁ ଯା ହେଲା। ଯା ତା' କପାଳରେ ଥିଲା ! ଯାହା ଗୋଡ଼ତଳେ ବସି ସେ ସ୍ୱର୍ଗସୁଖ ଅନୁଭବ କରୁଥିଲା, ଯାହାର ଆଶା ଆଶ୍ୱାସନାରେ ସେ ଜୀବନ ଧରି ରହିଛି, ସେ ପୁଣି ଯାଇ ପରକୁ ହୃଦୟ ବିକିଲା, ଆଉ ଲଳିତା ତା' କାନରେ ଶୁଣିଲା ! ତାର ଦେବତୁଲ୍ୟ ସ୍ୱାମୀ ଆଜି ଚରିତ୍ରହୀନ, ନିଶାଖୋର। ପୃଥିବୀ ଦି'ଖଣ୍ଡ ହେଲାନାହିଁ ! ଲଳିତା ପଶିଯାନ୍ତା ଏ ଦୁଃଖ ଭୁଲନ୍ତା। ଯା ପୂର୍ବରୁ ଭଲା ତାର ମୃତ୍ୟୁ ହୋଇଥାନ୍ତା ! କୂଅମୂଳେ କଚାଡ଼ି ପଡ଼ି ଟିକେ କପାଳ କଣା ହୋଇ ରହିଗଲା, ସମୁଦାୟ ମୁଣ୍ଡଟା ଫାଟିଗଲା ନାହିଁ ? ଚିତାଗ୍ନିରେ ତ ଆଜି ତାର ସବୁ ଦୁଃଖ ଭସ୍ମ ହୋଇଯାଇଥାନ୍ତା। ଜର ହୋଇଥିଲା, ସେଥିରେ ପ୍ରାଣ ଗଲା ନାହିଁ ?

ଲଳିତା କାନ୍ଦିଲା, ଆକାଶର ଗାଢ଼ ଅନ୍ଧକାର ତା ସହିତ କାନ୍ଦିଲା, ପୋଖରୀ କୂଳର ଭୁତିଆରି ଗଛଗୁଡ଼ିକ ତା ସହିତ କାନ୍ଦିଲେ, ଚେକୋ ମାକଡ଼ା ପଥରଟି ସୁଦ୍ଧା ତା ଦୁଃଖ ବୁଝିଲା; କିନ୍ତୁ ବୁଝିଲା ନାହିଁ ମଣିଷ ! ମଣିଷ କଣ ପାଷାଣଠୁ ବଳି ପାଷାଣ, ମଣିଷ କଣ ମାଟିଠୁ ବଳି ମାଟି, ମଣିଷ କଣ ହୃଦୟହୀନତାର ଚରମ ସୀମା ?

ଲଳିତା ପୋଖରୀକୁ ଅନାଇଲା । ଅନ୍ଧାରରେ ପାଣି ଉପରଟା କଳା ଚାଦରଟି ପରି ଦିଶିଲା, ଠାଏ ଠାଏ ତାରା ଆଲୁଅ ଝକ ଝକ, ଠାଏ ଠାଏ ପ୍ରତିବିମ୍ବଟିଏ ଫୁଟିଛି, ପୁଣି ନିଭୁଛି । ଲଳିତାର ହୃଦୟ କଣ ସେହିପରି ? ଲଳିତାର ମନେ ହେଲା-ବାପା ମା, ସାନଭାଇ ଲକ୍ଷିଆର କୋମଳ ମୁହଁଟି, କୃଷ୍ଣବର୍ଣ୍ଣ ଆଖି ଦୋଟି, ସାନ ଭଉଣୀ ରେବତୀର ଦୁଧଗୋଳା ଅଳତା ପରି କଅଁଳ ସୁନ୍ଦର ମୁହଁଟି, ପଦ୍ମ ପାଖୁଡା ପରି ଆଖିଟି ମାନ କି ସୁନ୍ଦର ସେଗୁଡ଼ିକ, କି ପ୍ରେମରେ ପୂର୍ଣ୍ଣ ! ବୋଉର ସେ ଚିରମଧୁର ଚିରସୁନ୍ଦର ସ୍ନେହମୟ ଦୃଷ୍ଟି । ଲଳିତା ତୁ ମରିବୁ । ଏମାନେ ଶୁଣିଲେ କଣ କହିବେ, ଯାଙ୍କୁ ଦେଖିବୁ ନାହିଁ ? ଯାଙ୍କ ଆଶା କଣ ଏକାବେଳକେ ଛାଡ଼ିଲୁ ? କିନ୍ତୁ ପରକ୍ଷଣରେ ଅଭିମାନ ଆସିଲା । ହଁ, ତାର ନନା ଅଛନ୍ତି, ବୋଉ ଅଛନ୍ତି, ବାରବର୍ଷର ପିଲାକୁ ଶାଶୁଘରକୁ ପଠାଇ ଦିନେ ତତ୍ତ୍ୱ ନାହିଁ, ଦିନେ ଚିଠି ଖଣ୍ଡେ ନାହିଁ । ନନା କଣ ଟିକେ ଦେଖି ଆସିଲେ ତାଙ୍କର କ୍ଷତି ହୁଅନ୍ତା ? ପୁଣି ମନେ କଲା ପିତାର ଅପମାନ, ଶାଶୁ ହସ୍ତରେ ନିର୍ଦ୍ଦୋଷ ପିତାର ଲାଞ୍ଛନା । କିଏ ଆପଣା ମାନ ହରାଏ ? ଛାର ଝିଅଟା ଲାଗି କିମ୍ବା ତାର ପିତା ନିନ୍ଦିତ, ଅପମାନିତ ହେବେ ? ପିତାର ଶେଷ ବିଦାୟସ୍ମୃତି ତା ମନେ ପଡ଼ିଲା । ''ନଳି, ମୁଁ ଯାଉଛି ମା'', କଣ ଜୀବନରେ ସେହି ଶେଷ କଥା, ସେହି ଶେଷ ସାକ୍ଷାତ ? ହଜାର ଅପମାନ ହେଉ ସେ ଝିଅତ, ତା କଥା ତ ଟିକେ ପକାଇବା ଉଚିତ । ନାହିଁ, ବାପମାର ଆଶା ବୃଥା; ସେ ଆଶା-କୁହୁକରେ ସେ ବଞ୍ଚି ପାରିବ ନାହିଁ । ସହିବାର ତ ଗୋଟିଏ ସୀମା ଅଛି, ସେ ଆଉ ସହି ପାରିବ ନାହିଁ । ଶାଶୁର ସକାଳ ବ୍ୟବହାର ମନେ ପଡ଼ିଲା । ''ତୋ ଲାଗି ମୋର ପୁଅ ଖରାପ ହେଲା, ଚାକିରି ବନ୍ଦ କଲା, ତୁ ଅଲକ୍ଷଣୀ ଘରେ ପାଦ ଦେଲା ଦିନୁଁ ହତଶିରୀ' ଗୋଡ଼େଇଲା । ଆସିବାର ଦି'ମାସ ହୋଇନାହିଁ, ଶ୍ୱଶୁରକୁ ଖାଇଲୁ, ଆଲୋ ପାଦକେ ଶିରୀ ପାଦକେ ହତଶିରୀ ।'' ସେ ଅଲକ୍ଷଣୀ, ତା କପାଳଟା ଉଚ୍ଚ, ତା ଗୋଇଠିଟା ମୋଟା, ତା ପାଦଟା ବଙ୍କା, ସବୁ କୁଲକ୍ଷଣରେ ପୂର୍ଣ୍ଣ - ଏ ସବୁ କଥା ସବିସ୍ତାରେ ଆଲୋଚନା କରି କରି ସୁଦ୍ଧା ତମୋଳିନୀର ତୃପ୍ତି ହୋଇ ନାହିଁ । ସମସ୍ତେ କହନ୍ତି, ସେହି ସର୍ବନାଶର ମୂଳ । ସେ ଘରେ ପାଦ ଦେଲାଦିନୁ ସବୁ ଅନର୍ଥ । ମଣିଷର ପ୍ରାଣ ଆଉ କେତେ ସହିବ ? କାହାପାଇଁ ସହିବ ?

ଆଜି ତ ତାହାର ସବୁ ଆଶା ନିର୍ମୂଳ । ଦୁଇ ବରଷ ଛାତିରେ ପଥର ପକାଇ ଯାହାପାଇଁ ଏତେ ସହିଲା, ସେହି ସ୍ୱାମୀ ତା ତଣ୍ଟିରେ ଛୁରୀ ଦେଲା ! ପୁରୁଷପୁଅବୋଲି କଣ ସାତଖୁଣ ମାଫ ? ଅଭିମାନରେ, କୋହରେ ମର୍ମସ୍ଥଳ ବିଦୀର୍ଣ୍ଣ ହେଲା । ସେ ଆକାଶକୁ ଅନାଇଲା । ଆକାଶର ଗାଢ଼ ଅନ୍ଧକାର ଭିତରୁ ତାରାର ମିଟି ମିଟି ଚାହାଣୀ ଦେଖି ତା' ମନଟା ଉଦାସ ହୋଇଗଲା । ତାରାଗୁଡ଼ିକ କେତେଦୂରେ । ସେ ରାଇଜରେ କଣ ଏହିପରି ସୁଖଦୁଃଖ ଅଛି ? ଏହିପରି ହସ କାନ୍ଦର ଅଭିନୟ କଣ ସେହି ରାଜ୍ୟରେ ଦେଖାଯାଏ ? ନା, କେବଳ କ୍ରୁର ଅତ୍ୟାଚାରୀ, ଅନାଚାରୀ ମଣିଷ ରାଜ୍ୟରେ ଅଛି ? ମଣିଷ କାହିଁକି ଏ ପାପ ପୃଥିବୀରେ ଜନ୍ମ ହୁଏ, କାହିଁକି ମିଛେ ମିଛେ ଏତେ ଦୁଃଖ ଯନ୍ତ୍ରଣା ସହେ ?



# ଦିଲ୍ଲୀଚିଠି (୪)

## (ଦେଶ ମିଶ୍ରଣ ଓଡ଼ିଶାର ଐକ୍ୟ ଲାଗି ଉଦ୍‌ବୋଧନ)

ସମ୍ପାଦକ ମହାଶୟ,

ସାଦର ନମସ୍ତେ ।

ବହୁଦିନ ହେଲା ଆପଣଙ୍କ ସହିତ ସାକ୍ଷାତ ନାହିଁ । ''ସହକାର'' ବୋଧହୁଏ ଓଡ଼ିଶାର ନିତିଦିନିଆ ଝଗଡ଼ାରେ ପଡ଼ି ଆଉ ଦିଲ୍ଲୀ ଆସିବା ମନେ କରୁ ନାହିଁ । ଖବର କାଗଜ ଫିଟାଅ ତ ଦେଖିବ ଖାଲି କଳିର ପସରା ! କାହିଁ କଂଗ୍ରେସ ବୈଠକରେ କଳି ତ, କାହିଁ ଉତ୍କଳ-ସାହିତ୍ୟ-ସମାଜ-ମନ୍ଦିରରେ ଝଗଡ଼ା ରଗଡ଼ା, କାହିଁ ଦେଶ ମିଶ୍ରଣ ଲାଗି ଚିତ୍କାର ! ଗଲା ପଚିଶ ତିରିଶ ବର୍ଷର କଥା ହେଲାଣିଟି - ପିଲାଗୁଡ଼ିକ ସବୁ ଟେଣ୍ଡା ହେଲେଣି, ଟେଣ୍ଡାଗୁଡ଼ିକ ସବୁ ବୁଢ଼ା ହେଲେଣି; ହେଲେ ଦେଶମିଶ୍ରଣ ନାଟ ଆଜିଯାକେ ସେହି ''ଚିର ଯଉବନୀ'' ହୋଇ ବସିଛି । କେତେ ପୁରୁଷ ବିତିଲେ କେଜାଣି ଓଡ଼ିଆ ଜାତିର ମନର ଆରମାନଟା ମେଣ୍ଟିବ, ତା କାଠ ମହାପୁରକୁ ଜଣା ଏକା । କାଠ ପ୍ରଭୁଏ ନିଜେ କାଠ କି ନା, ଦେଶର ଗୁହାରି ଆଜକୁ ସୁଦ୍ଧା କଲିଜା କାଠ କରି ବଉଛନ୍ତି ! ଟାଙ୍କୁ ଭାବନା ଚିନ୍ତା ନାହିଁ, ବଇରୀଏ ତାଙ୍କର କି ଦଶା କଲେଣି । ତାଙ୍କ ପାଦ ତଳ ଚାଖଣ୍ଡକ ଭୂଇଁ ଛଡ଼ା ଆଉ ସବୁ ଯେ ବାହ ବଳିଆର ମାରିପିଟି ନେଇ ଗଲେଣି, ଏଟା ତାଙ୍କ ଦେହସୁହା ହେଲାରୁ ଆଉ ବାଧୁ ନାହିଁ ପରା ! ନୋହିଲେ କାହିଁ ହିମାଳୟର ପାଦମୂଳୁ ମହାସମୁଦ୍ର ମହୋଦଧିଯାଏ, ଏଣେ ଗଙ୍ଗା ଗୋଦାବରୀ ସୀମା ପର୍ଯ୍ୟନ୍ତ ମୁଲକଟାର, ତେଣେ ବର୍ମା, ସିଲୋନ, ଜାଭା, ବାଲି, ମାଳୟ, ସୁମାତ୍ରା ଆଦି ରାଇଜର ଏକଛତ୍ର ପ୍ରଭୁ ହୋଇଥିଲେ, ଏବେ କଟକ ପୁରୀ ବାଲେଶ୍ୱର - ଏଇ ତିନିଟା ମେଲେରିଆ ମଡ଼ାବଢ଼ି ବୁଡ଼ା ପଚା ସଢ଼ା ରାଇଜର ମାଳିକପଣିଆରୁ ହାଉଲେ ହାଉଲେ ଓହ୍ଲାଇବାକୁ ବସିଲେଣି ! ତଥାପି କାଠଙ୍କର ଚିନ୍ତା ନାହିଁ; ଆମେ ଚିନ୍ତି ଚିନ୍ତି ଚିତ୍କାର କରି ଡ଼କା ବୋବାଳି ଛାଡୁଥିଲେ କଣ ହେବ, ତାଙ୍କ କୃପା ତ ମୂଳରୁ ଶୂନ୍, କିଏ ଶୁଣୁଚି କହିଲ ? ପାଟି କରି ଚଣ୍ଟି ବସି ଯାଉନା କାହିଁକି, ଖାଲି ପାଟି ଦାଣ୍ଡକୁ ଶୁଭିବା ସାର ହେଉଚି । ଯେଝା ଯେ ବଳିଆର ବାବୁ, ତୁମେ ଓଡ଼ିଆ ଗହନ ନିଦରେ କାହିଁକି ଶୋଉଚ କହିଲ ? ଏଠିକିବେଳକୁ, ଏ ବର୍ଷ କଂଗ୍ରେସ ବର୍ଷ, ଦେଶ ମିଶ୍ରଣ ସମସ୍ୟାଟାକୁ ଭଲ କରି ଜାବୁଡ଼ି ଧର, ତୁମ ହାତ ମୁଠାରୁ ଏ ଶୁଭ ସୁଯୋଗ ନ ଖସୁ । ଦୁନିଆ ଆଗରେ ତୁମ ଦାବୀ ତୁମେ ସାବ୍ୟସ୍ତ କରି ଦେଖାଅ ଯେ, ତୁମେ ମଲା ଜାତି ନୁହ - ତୁମେ ଜୀଅନ୍ତା ! ତୁମ ଶିରାରେ ଶିରାରେ ରକତର ତାତି ଅଛି, ତୁମ ଛାତି ଭିତରେ ଧୁକୁ ଧୁକୁ ହେଉଚି, ତୁମ ଆଖିର ଜ୍ୟୋତି ଲିଭି ନାହିଁ । କଥାରେ କହନ୍ତି, ଶୋଇଲା ପୁଅର ଭାଗ ନାହିଁ । ଓଡ଼ିଆ ପୁଏ, ତୁମେ ଜଗତକୁ ଜଣାଅ, ତୁମେ ଶୋଇ ନାହିଁ ତୁମର ପୂରା ଚେତା ଅଛି । ତୁମ ହକ୍ ଧନର ତୁମେ ମାଳିକ, ତୁମ ପୂର୍ବ ଇତିହାସ ଗୋଟି ଗୋଟି ଖୋଜ ।

ବସନ୍ତକୋକିଳ, ତୁମେ କାହିଁକି ପ୍ରମାଣ କରିବାକୁ ବସିଚ ଯେ, ଭୁବନେଶ୍ୱରରେ ବୁଦ୍ଧଦେବଙ୍କର ଜନ୍ମ ବୋଲି ? ତୁମେ କଣ ଜାଣୁନାହଁ, ଭୁବନେଶ୍ୱର କିମ୍ବା ଛାର, ହିମାଳୟ ପାଦମୂଳ କଳିଙ୍ଗଟି ! ହେଲା ଏବେ କପିଳବାସ୍ତୁ ନେପାଳରେ, ନେପାଳର ସଭ୍ୟତା ଆଗ ନା କଳିଙ୍ଗର ? ଅଶୋକ ରାଜ୍ୟ ଆଗ ନା କଳିଙ୍ଗ ରାଜାଙ୍କ ଇତିହାସ ଆଗ ? କିଏ ପୁରୁଣା ? କିଏ ଭାରତରେ ପ୍ରଥମ ଚକ୍ରବର୍ତ୍ତୀ ରାଜା ? ବିଶ୍ୱବିଜୟୀ ଆଲେକ୍‌ଜାଣ୍ଡର (ସିକନ୍ଦର)ଙ୍କ ଶିକ୍ଷିତ ଗ୍ରୀକ୍ ସୈନ୍ୟମାନେ ସୁଦ୍ଧା କେଉଁ ରାଜାର ଦନ୍ତାବଳ ହାତୀକି ଦେଖି ଭାରତ ଛାଡ଼ି ପଳେଇଥିଲେ (କଳିଙ୍ଗ ଅଭିଯାନ ପାଇଁ ସାହସ କରି ନ ଥିଲେ) ? ତୁମେ ଏଡ଼େ ପୁରୁଣା, ତୁମେ ଭାରତର ବିଖ୍ୟାତ ସମୁଦ୍ରଗାମୀ ବୀର ନାଉରୀ ଜାତି, ଆଜି ସୁଦ୍ଧା ତୁମ ଜାତିଭାଇ ବର୍ମାରେ, ଜାଭା, ସୁମାତ୍ରା, ବାଲି, ଫିଲିପାଇନ୍ ଇତ୍ୟାଦି ପ୍ରଶାନ୍ତ ମହାସାଗରର ସବୁ ଦ୍ୱୀପରେ ଲକ୍ଷ ଲକ୍ଷ ଭରା । ରଜା,ରଉତ, ସାମନ୍ତ, ବ୍ରାହ୍ମଣ ସବୁ ତୁମରି ଜାତିର । କଳିଙ୍ଗ ଲୋକେ ଆଜି ସୁଦ୍ଧା ନିଜକୁ କୋଉଠି ''କରିନ୍'', କୋଉଠି ''କ୍ଲିଙ୍ଗ'' ବୋଲି ପରିଚୟ ଦେଇ ରହିଛନ୍ତି । ତୁମେ ତାଙ୍କୁ ଖୋଜ, ତୁମର ସେମାନେ ନିଜର । ଆସାମ ଦେଶ ଯାଅ, ଚଟ୍ଟଗ୍ରାମର ଗାଁମାନଙ୍କରେ ସୁଦ୍ଧା ତୁମ ଜାତିର ଲୋକେ ଭରା ଦେଖିବ ।

ଏଇ ଅଳ୍ପଦିନ କଥା - ମୋର ଜଣେ ଓଡ଼ିଆ ମିତ୍ର ଯେ କି କିଛି ଦିନ ପୂର୍ବେ ବର୍ମ୍ମାରେ ଆମରି ବାପ ଅଜାଙ୍କର ଲୀଳାଖେଳାର ବ୍ରହ୍ମରାଇଜ, ରଙ୍ଗ ମୂଳକ, ମଣ୍ଡଳ ନଗରୀରେ ଥିଲେ, କହିଲେ, ଦିନକର ତାଙ୍କର ହଠାତ୍ ଅଭିଜ୍ଞତା କଥା । ସେ କାମ କରୁଥିଲେ ବର୍ମ୍ମା ରେଲଓୟେ ଡ଼ିପାର୍ଟମେଣ୍ଟରେ ଜଣେ ସରକାରୀ କମ୍ପାଉଣ୍ଡର ରୂପେ । ଆଉ ଥିଲେ କୋଉଠି ନା ବର୍ମ୍ମାର ''ଓଡ଼ିଶା'' ପେଗୁରେ । ସରକାରୀ କାଗଜ ପତ୍ରରେ ସୁଦ୍ଧା ପେଗୁର ନାମ ''ଓଡ଼ିଶା'' । ତା ପାଖ ଗାଁ ନାଁ ''କାକପୁର'' ପୁଣି 'କଟକ' । ତାଙ୍କୁ relieving duty (ରିଲିଭିଂଡ଼ିଉଟି) ରେ ଯିବାକୁ ପଡ଼ିଲା ଦଶଦିନ ଲାଗି 'ଇଜି'କୁ (ନିୟୋଗୀ) ଗଣ୍ଡଗ୍ରାମ ଦୂର ଜଙ୍ଗଲ ଭିତରେ ବାସିନ (ବସନ୍ତ) କତିରେ । ବର୍ମ୍ମାର ଅତି ଅଭ୍ୟନ୍ତର । ଦିନେ ହଠାତ୍ ଜଣେ ଦୀର୍ଘାକାର ଗୌରବର୍ଣ୍ଣ ଉନ୍ନତନାସା ବର୍ମ୍ମା ଯୁବକ ଆସି ତାଙ୍କୁ ଏକ ଦୃଷ୍ଟିରେ ଚାହିଁ କଣ ଭାବିଲା କେଜାଣି, କହିଲା, ''ନମସ୍କାରୁଲୁ ବାବୁ !'' ବାବୁଟି ଚମକି ପଡ଼ିଲେ । ବର୍ମ୍ମାଭାଷାରେ ପଚାରିଲେ, ''ତୁମେ କି ଜାତି ?'' ଉତ୍ତର 'କରିନ୍' । ସେଠୁ ତା ସହିତ କଥାବାର୍ତ୍ତା ଆରମ୍ଭ ହେଲା 'ତୁମେ କ'ଣ ହିନ୍ଦୀ ଜାଣ ?' ଉତ୍ତରେ ''ନା'' । ''ତୁମେ ବଙ୍ଗଳା ଜାଣ ?'' ଉତ୍ତର ''ନା'' । ''ଆରେ, ତୁମେ କଣ ଓଡ଼ିଆ ଜାଣ ?'' ଓଡ଼ିଆ ନାମ ଶୁଣି ''କରିନ୍'' ଯୁବକ ଆନନ୍ଦ-ଅଧୀର କଣ୍ଠରେ ବର୍ମ୍ମାଭଙ୍ଗୀରେ କହିଲା ''ଆମେ ଓଡ଼ିଆ, ଆମେ ଓଡ଼ିଆ'' । ଓଡ଼ିଆ ବାବୁଟିର କୌତୂହଳ ବୃଦ୍ଧି ହେଲା । ତାଙ୍କୁ ବସିବାକୁ କହି ସବୁ ରୋଗୀଙ୍କୁ ବିଦାୟ କଲା ପରେ ବାବୁଟି ପଚାରିଲେ ''ତୁମେ ଓଡ଼ିଆ, କେତେ ଦିନ ହେଲା ଏଠି ଅଛ ?'' ସଂପୂର୍ଣ୍ଣ ବର୍ମ୍ମା ପୋଷାକମଣ୍ଡିତ ଯୁବକ ହସି ହସି କହିଲା 'ଏଟି ! ଏଟି ଆମ୍ଭଘର, ଏଟି ଆମ୍ଭ ବାପଘର, ଅଜାଘର ।'' ସେଠୁ ତା ସହିତ ସେହି ଭଙ୍ଗା ଭଙ୍ଗା ଓଡ଼ିଆରେ ଅନେକ କଥା ହେଲା । ଜଣାଗଲା ସେମାନେ ''କରିନ୍'', ସେମାନେ କଳିଙ୍ଗ ଦେଶରୁ ସାତଶ ଆଠଶ ବର୍ଷ ହେଲାଣି ଆସିଲେଣି । ଏଠି ସେମାନଙ୍କର ବହୁ ପୁରୁଷର ଘରଦ୍ୱାର । ବାବୁଟିକୁ ସେ ବଙ୍ଗାଳୀ ଭାବିଥିଲା, ଓଡ଼ିଆ ଜାଣିପାରି ମହାଖୁସିରେ ତା ପରଦିନ ନିଜ ଘରକୁ

ଡ଼ାକିନେଲା । ସେ ଦୂର ବଣ ଭିତରେ ବର୍ମ୍ମା ଘରେ ବର୍ମ୍ମା ପୋଷାକରେ ଆମର ଓଡ଼ିଆଭାଇ ଦେଖି ଆସିଲେ କଳିଙ୍ଗ ('କରିନ୍' 'କଳିଙ୍ଗ'ର ଅପଭ୍ରଂଶ) ପରିବାର - କଳିଙ୍ଗ ନରନାରୀ, ଛୁଆପିଲା, ବର୍ମ୍ମା ଢଙ୍ଗୀରେ ଓଡ଼ିଆ କଥା, ବର୍ମ୍ମୀ ଅକ୍ଷରରେ ଓଡ଼ିଆ ପୋଥି, ସଂସ୍କୃତ ପୋଥି, ହାତକଟା ସୂତା, ଗଳାରେ ଓଡ଼ିଆ କଣ୍ଠି, ନାକରେ ଓଡ଼ିଆ ଦଣ୍ଡୀ । ପୂର୍ବରେ ତାଙ୍କର ପୁଣି ବୋଇତ ଚାଲୁଥିଲା । ବର୍ମ୍ମାର ଅଧା ଅଧିବାସୀ "କରିନ୍" । ମୁଁ ବର୍ମ୍ମାରେ ଥିଲାବେଳେ ଦେଖିଛି, ଏମାନେ ପ୍ରକୃତ ବର୍ମ୍ମୀଙ୍କଠୁଁ ଭିନ୍ନ । ଯାଙ୍କ ମଧରେ ବର୍ଣ୍ଣ ଭେଦ ରହିଛି । ବିବାହ ସଂସ୍କାର ଅଛି । ଆଉ ବର୍ମ୍ମାରେ ଓଡ଼ିଶା ଭଳି ଅଠର ଗଡ଼ଜାତ - ସେଥି ମଧରୁ ଖାସ୍ କରିନ୍ ଷ୍ଟେଟ ଗୋଟାଏ । କିଏ ଅଛ, ଓଡ଼ିଆ ଭାଇ ! ତୁମର ସେହି କଳିଙ୍ଗ ଭାଇକି ସଂଖୋଳିବାକୁ - ଯେ ଆଜି ସୁଦ୍ଧା କହିପାରେ "ଆମେ ଓଡ଼ିଆ" । ବର୍ମ୍ମାରେ ସେ ଦୂର ବଣ ଭିତରେ, ବର୍ମ୍ମାର ସେ ପାଗୋଡ଼ା ପଥର ମୁଣ୍ଡରେ, ସେହି ଘନ ଘଞ୍ଚ ପର୍ବତ ସନ୍ଧିରେ, ତୁମ ଭାଇ ଭଉଣୀ ପ୍ରକୃତ କଳିଙ୍ଗ ସନ୍ତାନ, ତାଙ୍କ ଜାତୀୟ ମୌଳିକତା ଆଜି ସୁଦ୍ଧା ନ ହରାଇ ରହିଛନ୍ତି ? ଏ ଯେ ଆରବିୟାନ୍ ନାଇଟ୍ ଭଳି ରୋମାଞ୍ଚର ! କଳିଙ୍ଗ ନା ଧରି (ବର୍ମ୍ମାର ପ୍ରଧାନ ଅସ୍ତ୍ର ଦା) ମୁଣ୍ଡରେ ପେଣ୍ଡା ବାଳ ରଖି ପଉଆ (ପାଗ) ବାନ୍ଧି ଦେହରେ ରେଶମ ଲୁଙ୍ଗି (ଲହଙ୍ଗା) ଓ ଅଇଁଙ୍ଗୀ (ଅଙ୍ଗୀ) ଆଉ ଗୋଡ଼ରେ ଫନା (ପାନହ ବା ଯୋତା) ପିନ୍ଧି ଯେତେବେଳେ କରିନ୍ ଯୁବକ ଯୁବତୀ ବାହାରନ୍ତି, କିଏ ଭାବିବ, ଏହିମାନେ ଆମରି ଜାତି ନିଜର ରକ୍ତର ଓଡ଼ିଆ ? ଆହେ କଳିଙ୍ଗ ସନ୍ତାନ ! କିଏ କୋଉଠି ଅଛ, ବାହାରି ପଡ଼, ତୁମ ଜାତିଭାଇଙ୍କୁ ସଂଖୋଳିବାକୁ ।

ହେଉଟି ଏବେ ଅଗଷ୍ଟ ସଂଖ୍ୟା ଆର୍ଯ୍ୟ ପତ୍ରିକା "ସାର୍ବଦେଶିକ"ରେ ଆର୍ଯ୍ୟ ଧର୍ମୋପଦେଶକ କହ୍ନୟାଲାଲ ଲେଖିଛନ୍ତି, ତାଙ୍କ "ବାଲିଦ୍ୱୀପରେ ହିନ୍ଦ" ଶୀର୍ଷକ ଲେଖାରେ ଯେ, ସେ ସେଠାରେ ଜଣେ ବ୍ରାହ୍ମଣ ଘରକୁ ଗଲେ । ସେ ରହିଚି ବାଲୀର "କୌଳାଙ୍ଗ କାଙ୍ଗ" ନଗରରେ । 'କାଙ୍ଗ' ଚୈନିକ ଭାଷାରେ ନଗର ବୁଝାଏ । "କୌଳାଙ୍ଗ କାଙ୍ଗ" ମାନେ କଳିଙ୍ଗ ନଗର ଗଞ୍ଜାମର 'କଳିଙ୍ଗ ପାଟଣା", "କଳିଙ୍ଗ ଘାଟି" "କଳିଙ୍ଗ ଦଣ୍ଡପାଟ" 'କଳିଙ୍ଗ ଦାମଡ଼ା", "କଳିଙ୍ଗ କୁମୁଟୀ" "କାଳଙ୍ଗା" (ସାର ପରଶୁରାମ.ପାତ୍ରଙ୍କ ଜାତି) ଏସବୁ ନାମ ସହିତ ତୁଳନୀୟ । ବାଲୀର ପାହାଡ଼ର ନାମ "ଚିନ୍ତାମଣି" (ନାମ ଚିନ୍ତାମଣି, ବିଦଗ୍‌ଧ ଚିନ୍ତାମଣି, ବୈଦ୍ୟ ଚିନ୍ତାମଣି ପ୍ରଭୃତି ଗ୍ରନ୍ଥର ନାମର ସାମଞ୍ଜସ୍ୟ) । ୧୯୦୩ ସାଲ ପର୍ଯ୍ୟନ୍ତ (୧୮୦୩ରେ ଶହେ ବର୍ଷ ପୂର୍ବେ ଓଡ଼ିଶାର ସ୍ୱାଧୀନତା ଲୁପ୍ତ) ୟୁରୋପିୟାନମାନଙ୍କୁ ବାଲୀଦ୍ୱୀପର ନାଁ ସାଙ୍ଖିଆ ଜଣା ନଥିଲା । ଗୋଟାଏ ଓଲନ୍ଦାଜ ଜାହାଜ ଝଡ଼ରେ ଭାସିଯାଇ ଚଡ଼ାରେ ନ ଲାଗେ ନା ବାଲୀଦ୍ୱୀପରେ ପରା ସେମାନେ ନ ପାଆନ୍ତି । ସେଠୁ ସନ ୧୯୦୬ ରେ ହଠାତ୍ ଚଢ଼ଉ କରି କଳିଙ୍ଗ ରାଜାଙ୍କ ସହିତ ଫିରିଙ୍ଗିମାନେ ଯୁଦ୍ଧ କଲେ । ଜଣେ ରାଜା ତ ବିଷ ଖାଇ ମଲେ, ଜଣେ ଯୁଦ୍ଧଭୂଇଁରେ ମଲେ, ରାଣୀମାନେ ଆତ୍ମହତ୍ୟା କରି ମଲେ (ବାରବାଟୀ ଦୁର୍ଗ ଓ ଖୋରଧା ଦୁର୍ଗର ରାଣୀମାନଙ୍କ ହାବିଳୀରେ ବୁଡ଼ି ମରିବାର ସାମଞ୍ଜସ୍ୟ); ଆଉ ବାଲୀଦ୍ୱୀପର ଦଣ୍ଡମୁଣ୍ଡର କର୍ତ୍ତା ହେଲେ ଓଲନ୍ଦାଜ । ସେଠିକାର ସମସ୍ତ ଅଧିବାସୀ ହିନ୍ଦୁବର୍ଣ୍ଣାଶ୍ରମୀ, ମୂର୍ତ୍ତିପୂଜକ । ସେଠିକାର ନାରୀମାନେ ବୀରା, ତେଜସ୍ୱିନୀ । "କଳିଙ୍ଗାଃ ସାହସିକାଃ" ପ୍ରବାଦର ଚାକ୍ଷୁସପ୍ରମାଣ ଗଞ୍ଜାମରେ ତଥା ବାଲୀରେ ।

ଏ ସବୁ ଶୁଣି କାହା ମନରେ ନ ହେବ "ହାୟ, କଣ ଥିଲୁ କଣ ହେଲୁ ?" କୋଣାର୍କ ଗର୍ବରେ ଆକାଶ ଛୁଉଁଥିଲା ବୋଲି କଣ ଆଜି ଭାଙ୍ଗିରୁଛି ମାଟିରେ ସାତ ମାଟି ହେଲା ! ଭାରତରେ ଆଉ କେଉଁ ଜାତି ଆବିଷ୍କାର କରୁ ଭଲା କିଏ ଆଉ ତାଙ୍କର କେଉଁଠି ଅଛି ? କିନ୍ତୁ ଅନା ତ, ତମାମ୍ ଦରିଆଯାକ ଆମ ମୁଲକ - ଆମ ମୁଲକ କଣ ଖାଲି କଟକ ପୁରୀ ବାଲେଶ୍ୱର ? ଆମେ ହତାଶ, ଆମେ ନିରାଶ, ଆମେ ଦୁର୍ବଳ - ଆମେ ଭାବୁଚୁ, ଆମେ ନିଃସ୍ୱ ।

ନା ଭାଇ, ଭାବ ନାହିଁ ।
"ଆଖିରୁ କିପାଁ ବହେ ବାରି ?
ତୁମରି ସେ ବୀର ନାଉରୀଙ୍କ କଥା
ଦୁଃଖେ କି କଳିଜା ହୁଏ ଘାରି ?
ନୋଇଁଚି ମଳିନ କଳିଙ୍ଗ ସଉନ,
ବିଜୟ ନିଶାଣ ଛାଉଣୀର ଚିହ୍ନ
ବାଲି ବର୍ଣ୍ଣ, ଶ୍ୟାମେ, ମଳୟ ଅନାମେ,
ବ୍ରହ୍ମମୁଣ୍ଡେ ଦଣ୍ଡ ଛତ୍ରଧାରୀ ।
ମଣ୍ଡଳ ନଗରେ କୌଳାଙ୍ଗ କାଙ୍ଗରେ
କରିନ ରାଜ୍ୟରେ ଜାଭା ଘରେ ଘରେ
ଆମରି କଳିଙ୍ଗ ଭାଇ ବସିଛନ୍ତି
ପୂରୁବ ଗୌରବ ଅଧିକାରୀ ।
ଟାଣୁଆ ଓଡ଼ିଆ, ଜିଣିଲୁ ଦରିଆ
କଲୁ କାରିଗରି ପଥରରେ ଠିଆ
ତୋର ଚକ୍ରବର୍ତ୍ତୀ ଗଜପତି ପାଦେ
ପୃଥିବୀ ପଣନ୍ତ ଥିଲା ପାରି
ମାଞ୍ଚୁରିଆ ଚୀନ୍ ଜାପାନ ନୃପତି
ଆସ ରେ କଳିଙ୍ଗ ବୌଦ୍ଧଭିକ୍ଷୁ ଯତି
ରଚିଲେ ମନ୍ଦିର ମଠ ବିଦ୍ୟାପୀଠ
ଅଜ୍ଞାନ ଅଧମ ନରେ ତାରି ।"

ଭାଇମାନେ, ଆଜି ଓଡ଼ିଶା ଦେଶମିଶ୍ରଣ ଲାଗି ପୁଣି ଆମେ ଏତେ ପଦେ ପଦେ ବାଧା ପାଉଚୁ । ଓଡ଼ିଆ ସାମନ୍ତ, ଓଡ଼ିଆ ମହାନ୍ତି ପୂର୍ବ ପୁରୁଷର କୃତିତ୍ୱ ଭୁଲିଯାଇ କହୁଚନ୍ତି, "ଆମେ ବଙ୍ଗାଳୀ" । ମୁଁ ପଚାରେ ସେମାନେ ବଙ୍ଗାଳୀ ନା 'ବାଙ୍ଗାଳ ?" ବାଙ୍ଗାଳ ଯେ ପୂର୍ବବଙ୍ଗୀ କାହିଁ ତାଙ୍କ ସହିତ ଆମର କିଛି କଳି ନାହିଁ - ଲାଗୁଚି ପୁଣି ଆମରି ଭିତରେ, ଯେ ଆମରି ସୋଦର ଗୋତ୍ର ! ଯଦି ଭ୍ରାତୃବିବାଦ ଓଡ଼ିଶାରେ ଲାଗି ନ ଥାନ୍ତା, କଳାପାହାଡ଼ ଓଡ଼ିଶାରେ ପଶି ନଥାନ୍ତା,

ମୁକୁନ୍ଦ ଦେବ ହାଣ ଖାଇ ନଥାନ୍ତେ, ତେବେ ଆଜି ସେହି ହୁଗୁଳୀ କୂଳ ପର୍ଯ୍ୟନ୍ତ ପ୍ରକୃତ ''ଉତ୍କଳ''ର ଲୋକେ ବାଙ୍ଗାଳଙ୍କ ସଙ୍ଗେ ମିଶି ବଙ୍ଗାଳୀ ବନି ନ ଥାନ୍ତେ - ଚୁଟିମୁଣ୍ଡିଆ ଓଡ଼ିଆ ବ୍ରାହ୍ମଣ, ଯାଜପୁରିଆ ଚଇତା', ମେଦିନୀ ପୁରିଆ' ଈଶରା', ଯାଜପୁରିଆ ହୋତା ବ୍ରାହ୍ମଣ 'ଶିବା' (ଶ୍ରୀ ଚୈତନ୍ୟ, ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର, ପଣ୍ଡିତ ଶିବନାଥ ଶାସ୍ତ୍ରୀ) ଜନ୍ମି ନଥାନ୍ତେ, ବଙ୍ଗଳାରେ ବୈଷ୍ଣବ ଧର୍ମ, ସମାଜ ସଂସ୍କାର ଓ ବ୍ରାହ୍ମ ଧର୍ମର ଢ଼େଉ ଖେଳି ନ ଥାନ୍ତା । (ପାଠକ ଅବଧାନେ ଥରେ ''ଚୈତନ୍ୟ ଚରିତାମୃତ'' ପଢ଼ନ୍ତୁ; ଥରେ କଲିକତା କଲେଜ ସ୍କୋୟାରଠାରେ ଈଶ୍ୱର ଚନ୍ଦ୍ରଙ୍କ ପ୍ରତିମୂର୍ତ୍ତି ଦେଖି ଆସନ୍ତୁ, ଥରେ ଶିବନାଥଙ୍କ ଆତ୍ମଚରିତ ପାଠ କରନ୍ତୁ ।) ଆଖି ଫେଡ଼ି ଦେଖି ବାବୁ ତୁମ ପୂର୍ବପୁରୁଷ କିଏ ? ତୁମେ କାହା ପୁଅ ଝିଅ ? ଦୁର୍ଭାଗ୍ୟ କ୍ରମେ ତୁମର ଲିପିଭେଦ ଘଟିଛି ବୋଲି ଏକାବେଳକେ ସାରାଭାରତଟା ମୋଗଲ କବଳରେ ପଡ଼ି କଳବଲ, ସେତେବେଳେ ଗଜପତିଙ୍କ ଛତ୍ରଛାୟା ତଳେ କେଡ଼େ ସୁଖରେ ଥିଲ, ସେ କଥା ଥରେ ମନେ ପକାଅ । ସାରା ପୂର୍ବବଙ୍ଗଟା ପଠାଣ ହେଲା । ତୁମେ ଏପରି କି ବଳୁଆ ଯେ ପଠାଣ ଦାଉରୁ ବଞ୍ଚିଗଲ ? ସେ ଓଡ଼ ପାଇକଙ୍କର ଖଣ୍ଡା ଶର ଯୋଗୁଁ, କାଳଞ୍ଜୀ ଦଳୁଆଙ୍କ ବର୍ଚ୍ଛା ସାବଳୀ ଯୋଗୁଁ । ଆଜି ସୁଦ୍ଧା ପୂର୍ବବଙ୍ଗୀ ପଶ୍ଚିମବଙ୍ଗୀ ଦୁଇ ଭିନ୍ନ ଜାତି, ଭିନ୍ନ ଭାଷାଭାଷୀ- ତାଙ୍କ ମଧ୍ୟରେ ବୈବାହିକ ସମ୍ବନ୍ଧ ବ୍ରାହ୍ମସମାଜର ଆଖିଫିଟା କଲ୍ୟାଣ ଛଡ଼ା ଅଧିକ କିଛି ହୋଇନାହିଁ ।

ବଙ୍ଗରାଜା ଲକ୍ଷ୍ମଣ ସେନ ପଠାଣ ଦାଉରୁ ପଳାଇ ଆସି କାହିଁ ଆଉ କେଉଁ ରଜାଘରକୁ ଗଲେ ନାହିଁ - ସିଧା ଆସିଲେ ଗଜପତି ଘରକୁ । ଚୈତନ୍ୟଙ୍କୁ ''ସୋନାର ବାଂଲା''ରେ ଧର୍ମପ୍ରଚାର ପାଇଁ ଭୂଇଁ ମିଳିଲା ନାହିଁ, ସେ ଚାଲି ଅଇଲେ ଆମ ଚୁଟି ମୁଣ୍ଡିଆଙ୍କ ଦେଶ ପୁରୀକି ! ଶେଷରେ ''ସୋନାର ବାଂଲା'' ଛାଡି ମହୋଦଧିରେ ଝାସ ଦେଲେ - ଉତ୍କଳରେ ପିଣ୍ଡ ପାତ କରିଗଲେ - ନିଜ ଜନ୍ମଭୂମିରେ ମଲେ ।

ଅତଏବ ଭାଇ, କଳିଗୋଳ ଛାଡ଼ି ଆପଣା ଜାତି କଣ ସ୍ୱୀକାର କରିନିଅ । ତୁମେ ଆମେ ଭିନ୍ନ ନୋହୁ । ଏକାବେଳେକେ ଏକା ରକ୍ତ, ଏକା ଗୋଷ୍ଠୀ - ପଠାଣଙ୍କ କଲ୍ୟାଣରେ ତୁମେ ଆମଠୁ ଭାଙ୍ଗି ତୁଟି ଯାଇଚ । ଆଉ ତାଙ୍କରି ଦାଉରେ ତୁମର ଦେଶ ଗଲା, ଇତିହାସ ଗଲା, ପୂର୍ବ ସାହିତ୍ୟ ଗଲା ।

ଗଲାଣି ତ ଗଲା କଥାରେ ସଙ୍ଗାତ ! ବଡ଼ ଗଛଟା ଭାଙ୍ଗି ପଡ଼ିଛି । କେତେ ଚଢ଼େଇଙ୍କର ବସା ସେଥିରେ ଥିଲା, କେତେ ଲୋକଙ୍କୁ ସେ ଆହାର ଦେଉଥିଲା, କେତେ ଲୋକ ତା ଛାଇତଳେ ବିଶ୍ରାମ କରୁଥିଲେ । ସେ ବୁଢ଼ା ପୁରୁଣା ଗଛଟା ସିନା ଭାଙ୍ଗିଗଲା, ଗଣ୍ଡିଟା ତ ଅଛି । ନୂଆ ପଲ୍ଲବ କଣ କଅଁଳିବ ନାହିଁ ? ନୂଆ ଡ଼ାଳ ପତ୍ର କଣ ସେଇଥିରେ ଦେଖାଦେବ ନାହିଁ ? ଏଡ଼େବଡ଼ ଜାତି ତାର ଏଡ଼େ ବଡ଼ ଅତୀତ ! ବର୍ତ୍ତମାନ ଦୁର୍ବଳ ଥିଲେ ସୁଦ୍ଧା ତାର ଭବିଷ୍ୟତ ଉଜ୍ଜ୍ୱଳ । ସେଥିପାଇଁ-

''ହେବୁ କି ବଞ୍ଚିତ ବିଶାଳ ଅତୀତ
କିରଣ କିଞ୍ଚିତ ଦେବତା ବାଞ୍ଛିତ ?

ତୋ ବିପରି ରାତି - ପାହାନ୍ତି ହେଲାଣି
ନ୍ୟନେ ନ ଚାହଁ ତୁ ମୌନ ମାରି ।''

ଦେଶମିଶ୍ରଣ ଆମର ହକ୍ ଦାବୀ । ଆମକୁ ସେଥିରୁ ବଞ୍ଚିତ କରିଥିବାଯାକେ ଭାରତବର୍ଷର ରାଷ୍ଟ୍ର ଜଗତରେ ଯେ କଲ୍ୟାଣ ହେବ, ଯା କେବେ ସମ୍ଭବ ନୁହେଁ । ଗୋଟିଏ ଜାତିକୁ ହୀନ ବଞ୍ଚିତ କରି ରଖିଲେ ତାର ଆଖ ପାଖ ଅନ୍ୟାନ୍ୟ ଜାତିମାନଙ୍କର ସୁଦ୍ଧା ଅମଙ୍ଗଳ ହୁଏ - ଏତ ଐତିହାସିକ ସତ୍ୟ । ଦେହର କାଣି ଆଙ୍ଗୁଠିଟି ବଥେଇଲେ ସାରା ଦେହକୁ ବାଧିବ ନାହିଁକି ? ଭାରତ ଯଦି ମହାଜାତୀୟତାର ଦାବୀ କରେ, ତା ହେଲେ ବଙ୍ଗାଳୀ, ବିହାରୀ, ତେଲେଙ୍ଗୀଙ୍କର ଉତ୍କଳ ସହିତ ବର୍ତ୍ତମାନ ଯେ ବ୍ୟବହାର, ସେହିଟା ଉଚିତ୍ କି ? ପରଧନ ଛଡ଼େଇ ବଡ଼ଲୋକ ହେବାଭଳି ଆଶା କରିବା ଦୁରାଶା ମାତ୍ର, ଅଳିକ ସ୍ୱପ୍ନ ମାତ୍ର । ''ପର ଦରବରେ ନହର ପହର - ଛଡ଼େଇ ନେଲେ ଲାଜରେ ମର ।'' ଯଦି ଭାରତରେ ମଙ୍ଗଳ ଚାହଁ, ଏକ ମହାଜାତୀୟତା ସୂତ୍ରରେ ପରସ୍ପର ବାନ୍ଧି ହେବାକୁ ଚାହଁ, ତା' ହେଲେ ନିଜ ଭାଇର ହକ୍ ମାଡ଼ିବସି ଆଖି ବୁଜି ତା ତଣ୍ଟି ଚିପ ନାହିଁ । ମୁଁ କହେ, ଯା ଦ୍ୱାରା ଭାରତରେ ଜାତୀୟ ସଦ୍ଭାବ ସଂପ୍ରୀତି ବଢ଼ିବାରେ ବଡ଼ ବାଧା ପଡ଼ିବ । ବାସ୍ତବରେ ଭାରତରେ ଭାଇ ଭଗାରି ବେଭାରଟା ଏଡ଼େ ପ୍ରବଳ ଯେ, ତା ଆଗରେ ଆଉ କିଛି ତାଙ୍କୁ ଦିଶୁନାହିଁ । ପଛକେ ନିଜର ସର୍ବନାଶ ହେଉ, ଘର ପଛେ ପୋଡ଼ୁ, ମୂଷା କେଞ୍ଚେ ପାଉ, ଘଇତା ପଛକେ ମରୁ, ସଉତୁଣୀ ରାଣ୍ଡ ହେଉ, ଏଇ ନୀତିରେ ଭାରତ ଚାଳିତ । କେତେ ଦିନ ଚାଲିବ ତା ବିଧାତାଙ୍କୁ ଜଣା, ନୋହିଲେ ଏଡ଼େ ବଡ଼ ହିନ୍ଦୁଜାତି ଜଗତରେ ଏତେ ଲୋକହସା ହୁଅନ୍ତା ନାହିଁ ।

ଏଣେ ଆମ କରମକୁ କରମଙ୍ଗା ଫଳୁଛି । ଆମେ ଜାତି ହିସାବରେ ଭାରତରେ ହୀନ ହୋଇ ରହିଚୁ । ଆମର ଶିକ୍ଷା ସଭ୍ୟତା ସାହିତ୍ୟ ସବୁ ଭାରତର ଅନ୍ୟାନ୍ୟ ଜାତିଙ୍କ ପଛରେ ପଡ଼ି ରହିଲା । ଆମେ ଓଡ଼ିଆ ବୋଲି ପରିଚୟ ଦେଲାବେଳକୁ ଆମ ପାଟି ଖନି ବାଜିଯାଉଛି, ଆମେ ଚୋରି କଲାଲୋକ ଭଳି ଲାଜରେ ପଛଘୁଞ୍ଚା ଦେଉଚୁ, କାହିଁକି ? ଅସଲ ଆମର ହାତ ଗୋଡ଼ ଭାଙ୍ଗି ଯାଇଛି । ଆମ ଦେହଯାକ ଖଣ୍ଡିଆ । ଆମେ ଗଣ୍ଡିମୁଣ୍ଡ କଟା ମାଦଳ ଭଳି ପଡ଼ିଛୁ । ଆମ ନିଜ ଗାଇଜଗୁଡ଼ା ପରମାନେ ଗୋଡ଼ତଳେ ମାଡ଼ିବସି ଆମ ଦୁଆରେ ଟାପରା କରି ବୁଲୁଛନ୍ତି । ଅତୀତ ଇତିହାସରେ ପେଡ଼ିଟିଏ ଫିଟେଇ ବସିଲେ ଭଲା, ଦେଖିବ, ସେଥିରେ କି ମାଲମାନ ଥୁଆ ହୋଇଚି ! ଭାଇ ଓଡ଼ିଆ, ତୁମ ପାଟି ତୁଣ୍ଡରେ ଯଦି ସଚ୍ଚା ବଳ ଥାନ୍ତା, ତୁମର କଲିଜା ଭିତରେ ଯଦି ଭାଇ ପ୍ରତି ସୋଦର ମମତାର ଟାଣ ଥାଆନ୍ତା, ତାହାଲେ ଆଜି ଦେଶମିଶ୍ରଣ ତୁମ ହାତମୁଠା ଭିତରେ । ତୁମେ ନିଜେ ନ କଲେ କିଏ କରିବ ? କଥାରେ କହନ୍ତି, ''ଆପେ ନ ମଲେ ସ୍ୱର୍ଗ ନ ଯାଇ ।'' ବଙ୍ଗାଳୀମାନେ ସ୍ୱଦେଶୀ ଆନ୍ଦୋଳନ କରି ଦିନ କେଇଟା ଭିତରେ କଟାଅଙ୍ଗ ଯୋଡ଼େଇ ନେଲେ; କିନ୍ତୁ ବଙ୍ଗ ଭଙ୍ଗ ଯେ ହୋଇଥିଲା, ସେଇଟି ଥିଲା ଏକ ପ୍ରକାର ଠିକ୍ । ସତରେ ତ ପୂର୍ବବଙ୍ଗୀ, ପଶ୍ଚିମବଙ୍ଗୀ ଦି'ଟା ଭିନ୍ନ ଜାତି - ଜଣେ ''ବାଙ୍ଗାଲ'' ଦେଶର ପ୍ରକୃତ ବଙ୍ଗାଲ, ଆଉ ଆରଟି ମୁକୁନ୍ଦ ଦେବଙ୍କ ପ୍ରଜାଗୁଡ଼ିକ 'ଓଡ଼ିଆ' ଓ ଓଡ଼ିଆଏ ପାଲଟିଲେ ''ବଙ୍ଗାଳୀ'' । ପୁଣି ସେହିମାନେ କଳି କରୁଛନ୍ତି ଆମ ସାଙ୍ଗରେ

ମିଶିବାକୁ ନ ଦେବେ । ଆମ ମେଦିନୀପୁର, ଆମ ଧଳଭୂଇଁ, ସିଂହଭୂଇଁର ଆମର ନିଜ ରକ୍ତର ସୋଦରଙ୍କୁ ଆମଠୁ କାଟି ନେବାକୁ କେଡ଼େ ସାହସ ଦେଖ । ଏଣେ ଆନ୍ଧ୍ରରୁ ପଞ୍ଝାଏ ଲାଗିଛନ୍ତି, କଳିଙ୍ଗ କମଳର କେଶର ଗଞ୍ଜାମଟାକୁ ଗିଳି ଦେବାକୁ - ଉତ୍କଳ କପାଳର ଟୀକା; ''ଚିଲିକିଲୀ'' ଉତ୍କଳମଣ୍ଡନ ''ପାରଳାଖେମୁଣ୍ଡି'', ଉତ୍କଳର ବିଜୟ ଗୌରବ ''ଜୟପୁର'' କୁ ଗ୍ରାସ କରିବାକୁ ଆନ୍ଧ୍ର-ମାଉସୀ ଆଁ କରି ଧାଇଁଛି । ବିହାରୀ ମଧ୍ୟ ପଡ଼ୋଶୀ ଓଡ଼ିଆଙ୍କ ଦେଶକୁ ଗିଳି ନେବାର ଚେଷ୍ଟାରେ ତ୍ରୁଟି କରୁନାହିଁ । ନିଟାଣୁଆ ଓଡ଼ିଆ ପୁଅ, ଏଇ ତୋର କ'ଣ କପାଳ ଲେଖନ ? ମଖନ ଖଣ୍ଡ ଧରି ଦି' ବିରାଡ଼ି ଛଡ଼ାକାମୁଡ଼ା କଲାଭଳି ମୋତେ ସମସ୍ତେ ରାମ୍ପି ବିଦାରି ସତ୍ୟନାଶ କରୁଥିବେ, ତୁ ସୁନାପୁଅଟି ଭଳି ଥିରିକିନି ସବୁ ବିଧା ଗୋଇଠା ସହୁଥିବୁ !!

ମୁଁ ପରା ଏଥରର ଓଡ଼ିଶା ଯାଇ ଦେଖିଲି - ସାନ ଓଡ଼ିଶାର ପ୍ରଧାନ ତିନୋଟି ଜିଲ୍ଲାର ବଡ଼ବଡ଼ ତିନୋଟି ସହର ଧଳା ସମୁଦ୍ର କୂଳରେ ବାଲେଶ୍ୱର, ନୀଳ ସମୁଦ୍ର କୂଳରେ ପୁରୀ, ମହାନଦୀ, କାଠଯୋଡ଼ିର ହୃଦୟପଦକ କଟକ । ସବୁ ଆଡ଼େ ଦେଖିଲି ମାର୍କାମରା ଦି'ଟା କଥା, ପରସ୍ପର ବିପରୀତ ଦୁଇଟା ଭାବ, ଏକ ଖଦଡ଼ଧାରୀ କଂଗ୍ରେସଙ୍କ ଭିତରେ ଜୀବନର ସ୍ପନ୍ଦନ, ଆଉ ନିସ୍ତେଜ ଜନସାଧାରଣ । ଓଡ଼ିଶା ପାଇଁ ଆଶା ଅଛି, ଓଡ଼ିଶାର ଭବିଷ୍ୟତ୍ ଅଛି, ଜଣାଇ ଦେଉଥିଲା ସେ ମୁଷ୍ଟିମେୟ ମୋଟା ଲୁଗାପିନ୍ଧାଙ୍କ ଦରିଦ୍ର ସଂହତି- ସେହି ଭଙ୍ଗା ଆଶ୍ରମ କୁଡ଼ିଆଟିମାନଙ୍କରେ ଥିବା ଋଷିପ୍ରତିମ ଯୋଗୀ ମୂର୍ତ୍ତିଟିମାନ । ଆଉ ଏ ପାଖରେ ସାଧାରଣ ଓଡ଼ିଆ-ଚାଳିଚି, ତାର ଖିଆଲ ନାହିଁ, ଦେଶର କେଉଁ ପାଣି କୁଆଡ଼ିକି ଯାଉଚି, ଦେଶରେ କି ପବନ ବହୁଚି, ସେ ଚାଳିଚି ତ ବଟୁଆ କାଖେଇ, ଚୁଟି ସମ୍ଭାଳି, ଗାମୁଛା ଛାକି, ତାରି ସେହି କୁଡ଼ିଆ ଭିତରେ ସୁଖ ଦୁଃଖ, ତାରି ଗାଁଗଣ୍ଡାର ହାଲ ହକିକତ୍, ତାର ପୋଖରୀ ତୁଠ ନଈକୂଳରେ ମାଲିମାମଲା, ତାର ବିଲ ବାଡ଼ିର ରୁଆ ବେଉଷଣ ନେଇ । ବାହାର ଜଗତ କଥା ସେ କଣ ଜାଣେ, ଜାଣିବାକୁ ତାର ବେଳ ନାହିଁ ବା ଗରଜ କଣ ?

ମୁଁ ପଚାରେଁ ଭାଇ ଚଷା, ତୁମେ ନ ହେଲେ ଆମେ ହେବୁଚି ? ତୁମେ ନ ଥିଲେ ଆମେ ଥିବୁଚି ? ତୁମେ ଆଜି ଆମକୁ ବଡ଼ କଲେ ଆମେ ବଡ଼ ହେବୁ । ତୁମେ ଅନ୍ନପାଣି ଦେଇ ଦେଶକୁ ପାଳୁଚ, ଝାଳ ନାଳ ହୋଇ ଜଙ୍ଗଲ ବହି ଦେଶ ମାଟି କାଟି ମାଲକ୍ଷ୍ମୀ ଅନ୍ନପୂର୍ଣ୍ଣାର ଉଦ୍ଧାର ନ କଲେ, ଆମେ ତ ପେଟରେ ଓଦାକନା ଦେଇ ବସନ୍ତୁ । ଭାଇ ମୁଲିଆ, ତୁମ୍ଭ ପରିଶ୍ରମରେ ସିନା ଆମେ ଏ କୋଠାଘର, ଏ ବିଜୁଳିବତୀ, ଏ ମୋଟରକାର, ଏ ସାତ ସଉଖିନୀ ଦେଖୁଚୁଁ । ତୁମେ ନ ଥିଲେ ଆମେ କି କଡ଼ାରେ ଗଣ୍ଡାଏ ! ଅଥଚ ତୁମେ ଜାଣନାହିଁ, ଦେଶଟା କାହାର ! ଗଣ୍ଡାଏ ପୁଞ୍ଜାଏ ବାବୁଭାୟାଙ୍କର କଣ ଦେଶ ? ଦେଶ ତ ତୁମକୁ ନେଇ । ଆମେ ଧୋବଧାଉଳିଆ ଦେଶର ଗୋରାଚମ ହେଲେ ସୁଦ୍ଧା, ତୁମେ ତ ଅସଲ ପଞ୍ଜରା କାଠି; ତୁମେ ଭାଙ୍ଗିଲେ ଆମେ ଅଖଞ୍ଜ - ଏକଥା ତୁମେ କେଉଁ ଦିନ ବୁଝିବ ?

ଦେଶର ଦରିଦ୍ର ପ୍ରଜାକୁଳ ! ତୁମେ କେଉଁ ଦିନ ଜାଗିବ, ତୁମେ କେଉଁଦିନ ଜାଣିବ, ଏ ଦେଶ-ଏ ଓଡ଼ିଶାଭୂଇଁ ତୁମର, ତୁମରି ରକ୍ତରେ ଟଳେ। ଏ ମାଟିର ତୁମେହିଁ ଅସଲ ମାଲିକ; କେବଳ

ମାଣିକ ନୁହ, ମାଣିକ ! ଆରେ ଭାଇମାନେ, ଆମ ଓଡ଼ିଶା ଗଲା । ସେ ଲକ୍ଷେ ରଜାର ମଉଡ଼ମଣି ରାଇଜ, ସେ ଚଳନ୍ତି ବିଷ୍ଣୁର ଗାଦୀ, ସେ ସାକ୍ଷାତ ଦିଅଁ ଜଗନ୍ନାଥଙ୍କ ଆସ୍ଥାନ ସେ ପୁରୁଷୋତ୍ତମ, ଯଯାତିଙ୍କ ଧନୁଖେଳା, ପାରିଧି ଖୀକାର ଭୂଇଁ ସରିଲା । କବିସୂର୍ଯ୍ୟ ଗାଇଛନ୍ତି - ''ଗଲାଣି ତ ଗଲା କଥାରେ ସଙ୍ଗାତ; ଗଲାଣି ତ ଗଲା କଥା '' ଏଇ ଭାବରେ କଣ ତୁମେ ଗଲା କଥା ପାସୋରି ଗଲଣି ? ତୁମ କଳିଙ୍ଗଭୂଇଁ, ତୁମ ବୀର କାହାଳୀ ବଜା ନାଚ, ଆରେ ପାଇକପୁଅ, ତୁମେ କଣ ଭୁଲିଗଲ ? ତୁମକୁ କି କୁହୁକ ଅନ୍ଧ କରିଚି ? ଆପଣ । ବଡ଼ବଡ଼ିଆଙ୍କ କଥା ଭାବଭଲା ! ଭାବ, ଚେତ, ମନରେ ହେଜ, କାହା ବଂଶ କଣ ହେଲାଣି । ଆଜି ଦାଣ୍ଡରେ ଭିକ ମୁଠାଏ ପାଇବା ଯୋଗ୍ୟ ରହିଲ ନାହିଁ । ତୁମ ହକ୍ ଅନ୍ୟ ଛଡ଼ାଇ ନେଉଚି । ପଖାଳ ଗଣ୍ଡାକୁ ଲୁଣଟିକର ଭରସା ରହିଲା ନାହିଁ; ନିତି ରୋଗ ବ୍ୟାଧିରେ ସଡ଼ିଗଲଣି । ବଢ଼ିପାଣି ବର୍ଷକୁ ବର୍ଷ ତୁମ ଗାଁଗଣ୍ଡା ଛାରଖାର କଲା, ତୁମେ ଏଡ଼ିକି ଦୁର୍ବଳ, ଏଡ଼ିକି ହୀନକପାଳିଆ ଯେ, ଏ ଆଖି ଲୁହ ସେ ଆଖିରେ ପୁରାଇ ଖାଲି ଆକାଶକୁ ଚାହିଁଥିବ !

ଏଥର ଓଡ଼ିଆ ଦେଶମିଶ୍ରଣ ପାଇଁ ପୁଣି କମିଟି ବସିଲାଣି । କେତେ କମିଟି, କେତେ କମିଶନ ତ ଫସରଫାଟି ଗଲାଣି, ଏ ପୁଣି କଣ କରିବେ ସେହି କାଠଙ୍କୁ ଜଣା । କେତେ ଡ଼ଫ, ଫିଲିପ, କମିଶନ 'ଡ଼େଫ' (କାଳ) ହୋଇଗଲେ - ଶେଷରେ ଡ଼େଫକୁ ବାଘ ଖାଇଲା । କେତେ ସାଇମନ 'ଖାଇମନ' କରି ଦେଶର ଧନ ଦରବରେ ମଉଜ ମାରିଗଲେ, ଓଡ଼ିଶାର ଛିଡ଼ା ଅଂଗଟା ଦଢ଼ ହେବାକୁ ନାହିଁ । ଭାଇଏ ! ଏସବୁ ମନଭୁଲାଣିଆ କଥା ଜଗତକୁ ଦେଖାଅ, ହାତ ଶଂଖାକୁ ଦର୍ପଣ କିଆଁ ? ତୁମ ହକ ତୁମେ ନିଜେ ଖୋଜିନିଅ । ତୁମ ବିଛିନ୍ନ ଭାଇଙ୍କ ଭିତରେ ପ୍ରଚାର କର, ଦେଶପ୍ରେମ ଜଗାଅ, ଜାତୀୟତା ଉଦ୍‌ବୋଧନ କର, ସେ ମଡ଼ାକୁ ତୁମ ଏକତା ଓ ଦୃଢ଼ତାରେ ମୃତସଞ୍ଜୀବନୀ ମନ୍ତ୍ର ଦିଅ । ତୁମେ ନିଶ୍ଚୟ ଜୟୀ ହେବ । ନ୍ୟାୟଯୁଦ୍ଧରେ ଭଗବାନ୍ ତୁମର ସହାୟ । ଦୁର୍ଯୋଧନ ଯେତେ ମାଡ଼ି ବସୁ, ବିନା ଯୁଦ୍ଧରେ ସୂଚ୍ୟଗ୍ର-ପରିମିତ ଭୂଇଁ ନ ଦେଉ; ନ୍ୟାୟବାନ୍ ଯୁଧିଷ୍ଠିରଙ୍କର ଶେଷକୁ ଜୟ ହେବ, ଏ କଥା ଭାବି ହତାଶ ହୁଅ ନାହିଁ ।

ଆହା, ସେ ଦିନ କେବେ ଆସିବ ? ଆମ ବୃହତ୍ତର ଉତ୍କଳର ସ୍ୱପ୍ନ ସଫଳ ହେବ । ଆମ ବହୁ ଦୂରର ଭାଇକୁଟୁମ୍ବ ଏକାଠି ମିଶିବୁ; ପରଦେଶୀଙ୍କ କବଳରେ ପଡ଼ି ଯେ ନିତି ମଡ଼ାଚକେଟାଗୋଡ଼ଦଳା ପୁରସ୍କାର ପାଉଚନ୍ତି । ବୀରେନ୍ଦ୍ର ଶାସମଲଙ୍କ ଭଳି ନା ଏ କୂଳ ହେଲେ ନା ସେ କୂଳ ହେଲେ - ଚିତ୍ତରଞ୍ଜନ ଦାସ, ସେନଗୁପ୍ତ, ବଙ୍ଗର ଶାଢ଼ୀଶିରିପା ''ଲିଡ଼ରୀ'' ନେତାଗିରି ମାରିନେଲେ - ଥନେଇ ରହିଲେ ଜଳକା । ହାୟ, ଅଲାଜୁକ ! 'ଚୋର ମା ଲାଜେ ନ କାନ୍ଦେ, କାନ୍ଦେ ତ କବାଟ କିଳି କାନ୍ଦେ - ସେ ପୁଣି ଆପଣା ଜାତିଭାଇଙ୍କ ତଣ୍ଟି କାଟିବାକୁ କ୍ଷୁର ଘଷୁଚନ୍ତି ।

ଫଳ କଥା - ଓଡ଼ିଆ ! ଯେ କି ତୁମ ଭିତରେ ଦେଶପ୍ରେମୀ ଅଛି, ଯା ଦେହରେ କଳିଙ୍ଗ ରକ୍ତର ଟୋପି ଅଛି, ଯେଉଁ ପରିସ୍ଥିତିରେ ଥାଉନା କାହିଁକି, କଂଗ୍ରେସୀ ହେଉ, ବେକଂଗ୍ରେସୀ ହେଉ, ଖଦଡ଼ଧାରୀ ହେଉ କି ବିଲାତି ଭକ୍ତ ହେଉ, ସେ ମୂଲିଆ ମଜୁରିଆ ହେଉ କି ବାବୁଭାୟା ସରକାରୀ

ଚାକିରିଆ ହେଉ, ତାର ଉଚିତ୍, ଦେଶମିଶ୍ରଣ ମହାସମସ୍ୟାରେ ମନେ ପ୍ରାଣେ ଯୋଗ ଦେବା । ଏଇଟା ଆମ ଜୀବନମରଣ ସମସ୍ୟା । ଆମ ମାନ ଅପମାନ ସବୁ ଏଇଥିରେ- ଏଇଟା ଆମ ଜାତିର Vital Problem. ଜୀବନ ଗଣ୍ଠି । ଖାଲି ଭାବିଲେ, ଖାଲି ଆଶା କରି ବସିଲେ କି ଖବରକାଗଜରେ ପଦେ ଅଧେ ଲେଖିଦେଲେ ଦେଶମିଶ୍ରଣ ହେବ ନାହିଁ, ଜାତିର ଜୋର ହେବନାହିଁ । ଆମର ମୁହଁ ଟାଣ, ଦେହ ଟାଣ, ମନ ଟାଣ, କଲିଜା ଟାଣ, ସବୁ ଟାଣ ହେବା ଦରକାର । ଟାଣ ଖପୁରିକି ସଭିଙ୍କର ଡ଼ର; ନିଟାଣୁଆକୁ କିଏ ପଚାରେ ?

ତୁମେ ଉଠ ଓଡ଼ିଶାର ପ୍ରଜାକୁଳ, ତୁମେ ଦରିଦ୍ର ହୁଏ, ମୂର୍ଖ ହୁଏ, ଚିରାକନା ଧଡ଼ି ସମ୍ବଳ ହୁଏ - ତୁମେ ଏକ ହୋଇ ଏକ ମନ ପ୍ରାଣରେ ଠିଆହୁଅ । ତୁମର ଏ ପଞ୍ଜରା କାଠିରେ ଭଗବାନ ନୂଆ ବଳ ଦେବେ, ତୁମେ ପୁଣି ଫେରି ପାଇବ ତୁମର ସେହି ସୁନାକିଆରି କଳିଙ୍ଗ ରାଇଜ - ହିମାଳୟର ପାଦମୂଳ ଦରିଆ ସେପାରି ପର୍ଯ୍ୟନ୍ତ ତୁମର ସେ ବିରାଟ କଳିଙ୍ଗ ରାଷ୍ଟ୍ର ତୁମକୁ ଘେନି ଧନ୍ୟ ହେଉ ।

''କି ବୋଲି ଡ଼ାକିବି ମାଗୋ,
କୋଟି କଙ୍କାଳ-ମାଳିନି !
ଦଳିତା ଲଞ୍ଛିତା ଭୀତା ଜଗତରେ ଜଞ୍ଜାଳିନୀ ।
ଜରେ ଜର ଜର ତନୁ
ଶିରୀ ସରିଛି ବଦନୁ
ସାହସ ହଜିଛି ମନୁ କଳିଙ୍ଗ ତୁ କାଙ୍ଗାଳିନୀ ।୧।
ବରଷେ ବରଷେ ବଢ଼ି,
ପାଣିରେ ଗଲୁଣି ସଢ଼ି
ଦେହେ ଚିରାକନା ଧଡ଼ି ପେଟ ଭୋକେ ପାଗଳିନୀ ।୨।
ସନ୍ତାନ ଯାକ ତୋହରି
ଘରର ଅସଲ ଅରି
ସ୍ୱଭାବେ ଶୃଗାଳ ସରି ଗୁଣରେ ସେ କୁଣ୍ଡଳିନୀ ।୩।
ଭଙ୍ଗା ତୋର ବାରବାଟୀ
ଚୂନ୍ନିଛି କୋଣାର୍କ ମାଟି
ରୁକ୍ଷ ବକ୍ଷ ପଡ଼େ ଫାଟି କାନ୍ତି ହୀନା କରାଳିନୀ ।୪।
ଚୋର ବିଦେଶୀ ଗାଲୁଆ
ବହି ନେଲେ ହୀରା ଲୁହା
ଶୂନ୍ୟ ତୋ ସୁନା ଫରୁଆ ଭିକ୍ଷାଥାଳୀ-ସମ୍ବଳିନୀ ।୫।
ଘର ଚିଜ ନେଲେ ବହି
ନିଜର ସେ ହେଲେ କହି
ପର ପଦାଘାତ ସହି ପାଷାଣ ତୁ ରସାଳିନୀ ।୬।

କଳିଙ୍ଗ-କଙ୍କାଳ ! ଉଠ କମ୍ପିତ ! ଉଠ ଦୁର୍ବଳ ! ତୁମର ଙ୍କାଳମାଳିନୀ ମା'ର ଆହ୍ୱାନରେ ତାର ଅମୃତମୟ କୋଳରେ ତୁମର ଅଭାବ କଣ ? ଏକାଠି ରହିବା ସୁଖଠୁ ଆଉ କଣ ଅଧିକ କଥା ? କିଏ ଚିତ୍କାର କରୁଚି, ଆରେ ବାବୁ, ଏକାଠି ଏକ ଶାସନରେ ରହିଲେ ଟଙ୍କା ଅଣ୍ଟିବ ନାହିଁ। କିଏ କହୁଚି, ଆମ ମେଦିନୀପୁରିଆଙ୍କ କଲିକତା ସୁବିଧା । ହାୟ ! ହାୟ ! ଏ କଣ ସବୁ ବିପଦବେଳେ ବିପରୀତ ବୁଦ୍ଧି ଭଳି ନୁହେଁ ? ଏକାଠି ମିଶିଲେ ଜାତିର ଶକ୍ତିଟା କେତେ ବଡ଼ ହେବ, ଜାତିର ଜାଗରଣ କେଡ଼େ ମହାନ୍ ହେବ, ତାର ଶ୍ରୀସୁଖ ସଂପଦ ସାହିତ୍ୟ ସବୁ ଚେଗେଁଉଠିବା । ଆରେ ମୂର୍ଖ, ସ୍ୱଜାତିର ଟଣ୍ଡିକଟା, ବାପ ଅଜାର ନାଁ ବୁଡ଼ାଗୁଡ଼ା, ଥରେ ଭାବ ତୁମ ଭବିଷ୍ୟତ୍ ସନ୍ତାନମାନଙ୍କର ତୁମ ମୂର୍ଖତାରେ କଣ ଗତି ହେବ । କାକ ମୟୂରପୁଚ୍ଛଧାରୀ ହେଲେ ସୁଦ୍ଧା ମୟୂରଦଳରେ ତାର ସ୍ଥାନ ନାହିଁ । ବେଳହୁଁ ସାବଧାନ ହୁଅ । ତୁମେ ଏକାଠି ବଜ୍ରଗଣ୍ଠିରେ ବନ୍ଧା ହେଲେ କୌଣସି ଅସୁବିଧା - କି ଦେଶଗତ, କି ଶାସନ ଗତ, କିଛି ରହିବ ନାହିଁ । ତୁମ ଜାତିର ପିଲାଏ ଦୁନିଆ ଦାଣ୍ଡରେ ମୁଣ୍ଡ ଟେକି ବାଟ ଚାଲିବେ । ଏ ସୁବର୍ଣ୍ଣସୁଯୋଗ ଛାଡ଼ିଲେ ଚିରଦିନ ପାଇଁ ପଙ୍ଗୁ ହୋଇ ନିର୍ବଳ ହୋଇ ପଡ଼ିଥିବ ।

ଏଣେ କଂଗ୍ରେସ, ତେଣେ ଦେଶମିଶ୍ରଣ ! ମହାପ୍ରଭୁ ! ଏ ମହାସନ୍ଧି ସମୟରେ ତୁମର କୃପାକଣା ଊଣା ନ ହେଉ । ତୁମେ ଏ କଳିଙ୍ଗ ଜାତିର ମାନ ମହତର ବାନା ଟେକିଧର । ନୋହିଲେ ଚୂନା କରି ଏକାବେଳେକେ ମହୋଦଧିରେ ବୁଡ଼ାଇ ଦିଅ କି, ତୁମେ ବି ନ ଥାଅ, କି ଆମେ ବି ନ ରହିବୁ, ସାଗର ଗର୍ଭରେ ସବୁ ଏକାକର ହେବୁ !

ନୀଳଚକ୍ରଧାରି ! ଚକ୍ରଧାରୀ ଉଦ୍ଧାର କର ବା ନାଶ କର - ଦରମରା କରି କଳବଳ ଛଟପଟ ହେବା କ୍ଲେଶ ଆଉ ତୁମ କଳାଡ଼ୋଳାରେ ନ ଦେଖ - ଏତିକି ଶ୍ରୀ ଛାମୁରେ ଗୁହାରି !

*ଦିଲ୍ଲୀ ତା ୨୮/୦୯/୩୧*



**ପ୍ରବନ୍ଧ**

# ଜାତିର ଚିଦାକାଶରେ ଏକ ଉଜ୍ଜ୍ୱଳ ଧ୍ରୁବତାରା

*ମହାପାତ୍ର ନୀଳମଣି ସାହୁ*

ଆଧୁନିକ ଓଡ଼ିଶାର ଓଡ଼ିଆଜାତୀୟ - ଆତ୍ମାର ପୁରୁଷ-ପ୍ରତୀକ ରୂପେ ଯେପରି ଆମେ ଉତ୍କଳ-ଗୌରବ ମଧୁସୂଦନ ଓ ଉତ୍କଳମଣି ଗୋପବନ୍ଧୁଙ୍କୁ ଗ୍ରହଣ କରିଛୁ - ସେହିପରି ଉତ୍କଳଭାରତୀ କୁନ୍ତଳାକୁମାରୀଙ୍କୁ ଆମେ ଆଧୁନିକ ଓଡିଆ ଜାତୀୟଆତ୍ମାର ଏକ ଉଜ୍ଜ୍ୱଳ ନାରୀ-ପ୍ରତୀକ ରୂପେ ଗ୍ରହଣ କରିବୁ । କୁନ୍ତଳାକୁମାରୀ ଦୁର୍ଗାଙ୍କର ତେଜ, ଶକ୍ତି ଓ ମହିମା - ସରସ୍ୱତୀଙ୍କର ବାକ୍-ବିଭବ ଓ ସୁକୁମାର ଭାବ-ବିଳାସ - ଲକ୍ଷ୍ମୀଙ୍କର ସୌନ୍ଦର୍ଯ୍ୟ, ପ୍ରେମ, କାରୁଣ୍ୟ ଓ ମାଙ୍ଗଲ୍ୟ ଏବଂ ମହାକାଳୀଙ୍କର ଅବାଧ ପ୍ରଚଣ୍ଡତା ଓ ସୀମା ଉଲ୍ଲଂଘନ ପ୍ରବଣତା ନେଇ ଜନ୍ମିଥିଲେ - ବଂଚିଥିଲେ ଓ ମରିଥିଲେ ମଧ । ଜୀବନକୁ ନେଇ ସେ ବହୁ ଦୁଃସାହସିକ ଅଭିଯାନ ଓ ପରୀକ୍ଷା ନିରୀକ୍ଷା କରିଛନ୍ତି । କିନ୍ତୁ ଜୀବନର ସଫଳତା ପାଖେ ସେ କେବେ ବନ୍ଧା ପଡ଼ି ଯାଇ ନାହାଁନ୍ତି, କି ବିଫଳତା ପାଇଁ କେଉଁ ଅଦୃଷ୍ଟ ନିୟତି ପାଖେ ପରାଜୟ ସ୍ୱୀକାର କରି ନାହାନ୍ତି । ତାଙ୍କ ଜୀବନର ସମସ୍ତ ସଫଳତା ଓ ବିଫଳତା, କୀର୍ତ୍ତି ଓ ଅକୀର୍ତ୍ତି, ବେଦନା ଓ ଆନନ୍ଦକୁ ସେ ତାଙ୍କର ଅନ୍ତରାସୀନ ଜୀବନ-ଦେବତାଙ୍କ ପାଖରେ ଆଞ୍ଜୁଳାଏ ଶେଫାଳୀ ଫୁଲ ପରି ଉତ୍ସର୍ଗ କରି ଦେଇଛନ୍ତି ଏବଂ ସଂସାର - ପ୍ରପଞ୍ଚର ସବୁ କିଛି ଦୈନ୍ୟ, ନିର୍ଯ୍ୟାତନା, ବିଫଳତା ଓ ନୈରାଶ୍ୟରେ ଜର୍ଜରିତା ହୋଇ ମଧ, ସେ ସେହି ଅନନ୍ତ ରହସ୍ୟମୟ ମହାଜୀବନର ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ପରମ ଆଶା ଓ ପ୍ରତିଶ୍ରୁତିର ବାଣୀ ନିଜ ଅନ୍ତର ଭିତରେ ଶୁଣିଛନ୍ତି ଓ ଜଗତକୁ ମଧ ଶୁଣାଇ ଦେଇଛନ୍ତି -

ଶେଷଗତି ନୁହେଁ ମୋର ମୃତ୍ୟୁ କେଉଁ କାଳରେ
ମରିବାକୁ ଫୁଟି ନାହିଁ ଭବ ତରୁ ଡ଼ାଳରେ
ଅଛି ରମ୍ୟ ଉପବନ ଯହିଁ ଫୁଟି ଚିରଦିନ
ଅନନ୍ତ ଅମୃତ ପ୍ରେମ ସୁଧାମୟ ସୁବାସେ,
ମୋହିବି ମୋ' ପ୍ରାଣପ୍ରିୟ ଦେବତାଙ୍କୁ ଉଲ୍ଲାସେ ।

*- ଶେଫାଳୀ ପ୍ରତି -*

ସେ କାଳର ଏହି ମହୀୟସୀ ମନସ୍ୱିନୀ, ତେଜୋବତୀ, କାରୁଣ୍ୟମୟୀ ଓ ତାରୁଣ୍ୟମୟୀ ନାରୀରତ୍ନଙ୍କ ସହିତ ଯେ କୌଣସି ସୁପୁରୁଷ, ଯେ କୌଣସି ପ୍ରକାର ପ୍ରୀତି - ସଂପର୍କରେ ବାନ୍ଧି ହୋଇଥିଲେ , ନିଜକୁ ଧନ୍ୟ ମନେ କରିବ ଓ ତାର ପୁରୁଷାକାରର ଭୂୟୋବିକାଶ ଘଟିଯିବ । କାରଣ

କୁନ୍ତଳା କୁମାରୀ ଏକା-ଧାରରେ ଥିଲେ ଜଣେ ଅନୁକଂପାବତୀ ସେବା - ନିରତା ମାତା - ପ୍ରେମ - ପ୍ରଣୟ - ବିହ୍ୱଳା, ଗଭୀର ହୃଦୟା ଆବେଗମୟୀ ପ୍ରଣୟିନୀ - ଶୁଭାକାଂକ୍ଷିଣୀ ସ୍ନେହମୟୀ ଭଗିନୀ ଓ ସଖୀ । ସମାଜର ସହାୟ-ସମ୍ବଳହୀନା ଦୁଃଖୀ ମଣିଷଙ୍କ ପାଖରେ ସେ ଥିଲେ ଅଭୟଦାୟିନୀ ଦେବୀ ଦୁର୍ଗା ଓ ଆଶ୍ରୟ ଦାୟିନୀ ଦେବୀ ମଙ୍ଗଳା ।

ସ୍ୱାମୀ ବିବେକାନନ୍ଦଙ୍କ ଅନୁଗତା ସର୍ବ ସମର୍ପିତା ପ୍ରିୟତମା ଶିଷ୍ୟା ଭଗିନୀ ନିବେଦିତାଙ୍କ ବ୍ୟକ୍ତିତ୍ୱର ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟ ଗୁଣ ତାଙ୍କଠାରେ ବହୁ ପରିମାଣରେ ରହିଥିଲା । କିନ୍ତୁ ହାୟ ଭାଗ୍ୟ । ଏହି ଶକ୍ତିମୟୀ ମହାଭାବମୟୀ ମହାପ୍ରାଣ - ନାରୀ ରତ୍ନଟିକୁ ମର୍ଯ୍ୟଦା ଦେବାପାଇଁ ଓ ଟେକି ଧରିବା ପାଇଁ ତତ୍‌କାଳୀନ ଓଡ଼ିଶାରେ ବିବେକାନନ୍ଦଙ୍କ ପରି ଶିବୋପମ ପୁରୁଷୋତ୍ତମ ଜନ୍ମି ନଥିଲେ ।

ଓଡ଼ିଶାର କାବ୍ୟ-କାନନରେ ଉତ୍କଳଭାରତୀ କେବଳ କୁହୁ କୂଜନ କରିନାହାନ୍ତି - ତାଙ୍କ କାବ୍ୟ ଭିତରେ ଯୁଦ୍ଧ କ୍ଷେତ୍ରର ଉନ୍ମତ୍ତଭେରି ବାଜି ଉଠୁଥିଲା । ପ୍ରଳୟର ଭୟଙ୍କର ବଜ୍ରନାଦ ଶୁଭୁଥିଲା । ମହା ସମୁଦ୍ରର ଉତ୍ତାଳ ତରଙ୍ଗମାନଙ୍କର ଉଲ୍ଲୋଳ କଲ୍ଲୋଳ ଉଚ୍ଛ୍ୱାସ ଉଠୁଥିଲା ଏବଂ ଅନନ୍ତ ଆକାଶର ମହିମ୍ନସ୍ତବ୍ଧତା ଭିତରୁ ଅନାହତ ଧ୍ୱନିମାନେ ମଧ ଅନୁରଣିତ ହୋଇ ଉଠୁଥିଲେ । ପ୍ରାଣଭୂମିର ପ୍ରଚଣ୍ଡ ପ୍ରେରଣା ଓ ଉଦ୍ଦୀପ୍ତ ପ୍ରଚୋଦନାରେ ତାଙ୍କ କାବ୍ୟର ପ୍ରତିଟି ଧାଡ଼ି ମନ୍ତ୍ର ଶକ୍ତିରେ ମଧ ସ୍ପନ୍ଦିତ ହୋଇ ଯାଉଥିଲା । ତାଙ୍କର ବାଣୀଥିଲା - ପବିତ୍ର ପ୍ରଭାତର ନବାରୁଣ ବନ୍ଦନାରେ କାକଳିମୁଖର - ମଧାହ୍ନସୂର୍ଯ୍ୟର ଖରଦୀପ୍ତିରେ ଭାସ୍ୱର ଓ ଉର୍ଜ୍ଜସ୍ୱଳ - ଏବଂ ଅସ୍ତ ଦିଗନ୍ତରେ ଏକାକୀ ଉଡ଼ି ଯାଉଥିବା ଏକ ଅଦୃଶ୍ୟ ବିହଙ୍ଗର ବିଷାଦ ମଧୁରସାନ୍ଧ୍ୟ ବନ୍ଦନା ଭଳି ।

କୁନ୍ତଳାକୁମାରୀ ଥିଲେ ପ୍ରଚଣ୍ଡ ଏକ ଅଗ୍ନିଶିଖା । ପ୍ରାଣର ଯଜ୍ଞବେଦୀରେ ସେ ତାଙ୍କ ହୃଦୟର ଅସଂଖ୍ୟ ଆବେଗ, ପ୍ରବେଗ, ଆଶା ଓ ଅଭୀପ୍‌ସାକୁ ନିତ୍ୟ ଆହୁତି ଦେଇ ଚାଲିଥିଲେ । ଅବଶେଷରେ ସେ ସେହି ମହାପ୍ରାଣ ଯଜ୍ଞକୁଣ୍ଡର ପ୍ରଜ୍ୱଳନ ଭିତରେ ନିଜକୁ ବି ଆହୁତି ଦେଇ ଅଳ୍ପ କେତୋଟି ବର୍ଷପରେ ଏହି ସଂସାରରୁ ବିଦାୟ ନେଇଗଲେ ।

ମାତ୍ର ତାଙ୍କର ସେଇ ପ୍ରାଣ ଯଜ୍ଞର ହୁତାଶନ ଭିତରୁ ଭବିଷ୍ୟତ ଓଡ଼ିଶାର ନାରୀଶକ୍ତି ଓ ପ୍ରତିଭାର ଆବିର୍ଭାବ ହୋଇଗଲା । ତାଙ୍କର ସେଇ ପ୍ରଜ୍ୱଳନ୍ତ ଆଗ୍ନେୟ ଜୀବନ ଆଧୁନିକ ଓଡ଼ିଆନାରୀର ମୁକ୍ତି ଓ ବିକାଶ ପାଇଁ ହୋଇଉଠିଛି ପ୍ରଚୋଦନାର ଉତ୍ସ । ସେ ଥିଲେ ଉତ୍କଳ ଜାତୀୟତାର ବାଣୀମୂର୍ତ୍ତି ଓ ମହାଭାରତୀୟ ଉପଲବ୍ଧିର ବୀଣା - ବାଦିନୀ ଭାରତୀ ।

ଆଧୁନିକ ଓ ଭବିଷ୍ୟତ ଉତ୍କଳର ନାରୀଜାତିର ପ୍ରାଣର ଆକାଂକ୍ଷା ଓ ଆତ୍ମାର ଅଭୀପ୍‌ସାର ସେହିଁ ଥିଲେ ଜ୍ୟୋତିଷ୍ମତୀ ପ୍ରତୀକ ।

ଏହି ମହୀୟସୀ ଉତ୍କଳିନୀଙ୍କ ଚରଣ କମଳରେ ମୋର ଏଇ ଦୀନମସ୍ତକ ଚିରଦିନ ସଂଲଗ୍ନ ରହିଥାଉ - ପ୍ରେମରେ, ଭକ୍ତିରେ ଓ ପରମ କୃତଜ୍ଞତାରେ । ଜାତିର ଚିଦାକାଶରେ କୁନ୍ତଳାକୁମାରୀ ଏକ ଉଜ୍ଜ୍ୱଳ ଧ୍ରୁବତାରା ପରି ଜଳୁଥାନ୍ତୁ ।

୬୮୭- ଆକାଶ ପାତାଳ
ଭୁବନେଶ୍ୱର - ୭୫୧୦୦୭



ତା ୧୨-୧-୨୦୦୦

# କୁନ୍ତଳାକୁମାରୀଙ୍କ କବିତାର ରହସ୍ୟବାଦୀ ସ୍ୱର

ସୌଦାମିନୀ ନନ୍ଦ

''ଚୈତନ୍ୟେର ଘନୀଭୂତ ସାରବସ୍ତୁ ପ୍ରେମ x x x ମାନୁଷେର ପ୍ରେମେର ମଧ ଦିୟା ମାନୁଷ ଶୁଧୁ ଆତ୍ମ-ଅତିକ୍ରମ କରେନା, ଅତିକ୍ରମ କରେ ତାର ସକଳ ମର୍ତ୍ତ୍ୟସୀମା'' ।

Our love at its highest flood goes beyond its limits and loses itself in the Infinite. Plato - Republic.

(ଶଶିଭୂଷଣ ଦାଶଗୁପ୍ତ - ଉପନିଷଦେର ପଟଭୂମିକାୟ ରବୀନ୍ଦ୍ରମାନସ)

ରହସ୍ୟବାଦ ଏକ ଅଧ୍ୟାତ୍ମ-ତତ୍ତ୍ୱରୂପେ ଦର୍ଶନ ଶାସ୍ତ୍ରରେ ଅନୁଶୀଳିତ, ମାତ୍ର ଏହାର ଏକ ଆତ୍ମିକ ଅନୁଭବାତ୍ମକ ପାର୍ଶ୍ୱ ମଧ ରହିଛି ଯାହା ସାହିତ୍ୟର ନିର୍ଣ୍ଣେୟ । ରହସ୍ୟବାଦ ନାମକରଣ ମୂଳରେ ରହିଛି ଏହାର ଅନ୍ତରୂପର ସର୍ବତୋ ବିରୋଧାଭାସ (Paradoxity) । ସବୁପ୍ରକାର ବିରୋଧାତ୍ମକ, ଦ୍ୱନ୍ଦ୍ୱାତ୍ମକ, ବିପରୀତ, ପରସ୍ପର ଅସ୍ୱୀକୃତ ଯୁଗ୍ମ ଉପାଦାନ ମାନ ଏଥିରେ ସହାବସ୍ଥିତ ଓ ସମନ୍ୱିତ । ଏହାର ବିଶ୍ଳେଷଣ ଏଇଥିପାଇଁ ଦୁଃସାଧ । ଭାଷାଶ୍ରୟୀ ସାହିତ୍ୟ କିନ୍ତୁ ଏଇ ଅବାକ୍‌କୁ ନେଇ ପ୍ରକଳ୍ପନ କରିବାକୁ ଅଧିକ ପ୍ରଲୋଭିତା ନ କହିପାରିବାର ଅନୁଭବକୁ ଭାଷାରେ ଫୁଟାଇବାର ପ୍ରୟାସ କଥାକୁ କରେ ଦୁର୍ବୋଧ୍ୟ । ତେଣୁ ତାର ଆଧାର ପ୍ରତୀକ, ରୂପକ, ବିମ୍ବ; ତାର ଆଶ୍ରୟ ବ୍ୟଂଜନା, ସଙ୍କେତ, ଧ୍ୱନି । କଥା ହୁଏ ସାହିତ୍ୟ ।

ରହସ୍ୟତତ୍ତ୍ୱ ଜୀବ ଓ ପରମର ଆତ୍ମିକ ପ୍ରୀତି ସଂବଂଧର ତତ୍ତ୍ୱ । ଏକ ପକ୍ଷରେ ଦିବ୍ୟ, ଅମର, ଅସୀମ, ଅନନ୍ତ ଶାଶ୍ୱତ ସତ୍ତା, ଅନ୍ୟ ପକ୍ଷରେ ମରଣଶୀଳ, ସସୀମ, ଦେଶକାଳାବଦ୍ଧ, ଖର୍ବ ଅପୂର୍ଣ-ଚେତନ ଜୀବସତ୍ତା । ଅତୀନ୍ଦ୍ରିୟ, ଅରୂପ, ପରମଚେତନ ସତ୍ତାକୁ ପାର୍ଥିବ ଜୀବନର ପ୍ରଣୟାନୁଭବରେ ଲାଭ କରିବାର ବିଚିତ୍ର ବ୍ୟଞ୍ଜନା ହେଉଛି ରହସ୍ୟବାଦର ପ୍ରାଣ । ରହସ୍ୟବାଦ ଯାହାଙ୍କୁ ନୈର୍ବ୍ୟକ୍ତିକ ବୋଲି ଜାଣେ, ତାଙ୍କ ସହ ବ୍ୟକ୍ତିଗତ ସଂବଂଧର କଥା କହେ, ଦର୍ଶନର ନିରାକାରକୁ ସାକାର ଇଷ୍ଟ ରୂପେ, ନିର୍ଗୁଣ ବ୍ରହ୍ମଣକୁ ସଗୁଣ ଈଶ୍ୱର ରୂପେ, କାଳାତୀତ ଅନନ୍ତକୁ କାଳବାଧିତ ମୁହୂର୍ତ୍ତର ସୀମାଭିତରେ ଅନ୍ତରର ନିବିଡ଼ତମ ଘନିଷ୍ଠ ପ୍ରେମ ସଂବଂଧରେ ସଂବୋଧିଥାଏ । ଈଶ୍ୱରଙ୍କ ସହ ମଣିଷର ଭାବସଂବଂଧ ପ୍ରତିରୂପତାରେ ବର୍ଣ୍ଣିତ । ସେ ସର୍ବ ସଂବଂଧର ମୂଳ । ମାତ୍ର ବ୍ୟକ୍ତି-ଆତ୍ମାର ଚିର ଅନ୍ୱେଷିତ ମଧୁରତମ ସଂବଂଧଟି ପ୍ରଣୟାନୁରାଗର; ସର୍ବଶ୍ରେଷ୍ଠ ପ୍ରେମିକ ତେଣୁ ଈଶ୍ୱର ।

ରହସ୍ୟବାଦୀ ଚେତନା କୌଣସି ଅଦ୍ଭୁତ, ଅବୋଧ ଶବ୍ଦାର୍ଥ ରହସ୍ୟର ସଂବାଦ ନୁହେ । ଏହା ଦର୍ଶନର ଶୁଦ୍ଧ ଅପାର୍ଥିବତା କିମ୍ବା ରୋମାଣ୍ଟିକ ଭାବାଦର୍ଶର ନିଛକ କଳ୍ପନାଚାରୀ ଅତୀନ୍ଦ୍ରିୟ ଭାବବିଳାସ ନୁହେଁ । ରୋମାଣ୍ଟିସିଜମର ଅପାର୍ଥିବ ଯେଉଁ ଅଜଣା ଅଜ୍ଞେୟ ତତ୍ତ୍ୱରେ ମେଟାଫିଜିସ୍ଟ ହୋଇ

ମିଳାଇଯାନ୍ତି, ମିଷ୍ଟିସିଜମ୍‌ର ଉପଲବ୍‌ଧି ସେଇଠାରୁ ଆରମ୍ଭ ହୁଏ । ଅପାର୍ଥିବ ଚେତନା ବ୍ୟକ୍ତିର ବାସ୍ତବ ଉପଲବ୍‌ଧିର ପାର୍ଥିବତାରେ ଆବିର୍ଭୂତ ହେବାହିଁ ମିଷ୍ଟିକ୍ ଉପଲବ୍‌ଧି । ଏଇ ଅନୁଭବରେ ବ୍ୟକ୍ତିସତ୍ତା ଓ ଦିବ୍ୟସତ୍ତାର ଭାବସଂବଂଧ ଅନିବାର୍ଯ୍ୟ ଭାବେ ସ୍ୱୀକୃତ । ସେ ଅଜ୍ଞେୟ ଓ ସବୁ ସମ୍ବନ୍ଧରେ ଊର୍ଦ୍ଧ୍ୱରେ ହେବା ସତ୍ତ୍ୱେ ବ୍ୟକ୍ତିର ଏକାନ୍ତ ଆପଣାର, ଆତ୍ମୀୟତାର ସଂବଂଧରେ ପରିଧୃତ ପ୍ରାଣର ଦୋସର । ସେ ଅବ୍ୟକ୍ତ ବ୍ୟକ୍ତିର ଅନ୍ତରରେ ବ୍ୟକ୍ତ ହେବେ, ଅତୀନ୍ଦ୍ରିୟ ସେ ତାର ଇନ୍ଦ୍ରିୟାନୁଭବରେ ପ୍ରସ୍ଫୁର୍ତ୍ତ ହେବେ, ଅରୂପ ସୁନ୍ଦର ରୂପ ମାଧୁରୀରେ ମୁଗ୍‌ଧ କରିବେ, ଜୀବ ଓ ପରମଙ୍କର ସଂବଂଧର ଏହାହିଁ ରହସ୍ୟମୟ ଅନିର୍ବଚନୀୟତା ।

ମିଷ୍ଟିକ୍‌ର ବିଶ୍ୱାସର ଜୀବନର ସବୁ ଲୌକିକ ସଂବଂଧ ସେଇ ପରମ ପ୍ରେମକୁ ପହଞ୍ଚିବାର ମାର୍ଗ । ଉନ୍ମୁକ୍ତିର ସଂଯୋଗ-ପଥ । ଦେହ ମନ ପ୍ରାଣ ଆତ୍ମାର ପ୍ରେମ-ସାଧନାର ବିରୋଧୀ ନୁହନ୍ତି, ସହାୟକ । ସତ୍ତାର ସବୁ କିଛି ଈଶ୍ୱରଙ୍କୁ ଧାରଣ କରିବାର ମାଧ୍ୟମ । ସେଥିପାଇଁ ଲୌକିକ ପ୍ରେମର ଅଲୌକିକତା ସାଧନ ଓ ଉତ୍ତୋଳନର କଥା ଭକ୍ତି ଓ ରାଗାନୁଗା ମାର୍ଗ ସାଧନା ରୂପେ ଏତେ ଗୁରୁତ୍ୱ ପାଇଛି ଏବଂ କୁନ୍ତଳା କୁମାରୀଙ୍କ କବି ସତ୍ତା ସେଇ ସାଧନାର ଅନୁଗାମୀ ।

କୁନ୍ତଳାଙ୍କ ଆବିର୍ଭାବ କାଳ ଓଡିଆ କାବ୍ୟଯୁଗର ନବ୍ୟ-ରୋମାଣ୍ଟିକ ଚେତନାର ବିକାଶ କାଳ । ରାଧାନାଥଙ୍କ ରୋମାଣ୍ଟିକ୍ କାବ୍ୟସ୍ୱରର ଆତ୍ମ-ଅନୁଭୂତି ପ୍ରବଣତା ସହ ସମତାଳରେ ଭକ୍ତକବି ମଧୁସୂଦନଙ୍କ ଉଦାର ବିଭୁପ୍ରେମର ରହସ୍ୟାତ୍ମକତା, ପରବର୍ତ୍ତୀ ଓଡ଼ିଆ କାବ୍ୟ ଭାବନାକୁ ପ୍ରଭାବିତ କରିଛି । ଭକ୍ତକବିଙ୍କ ବିଭୁପ୍ରେମର ଆନ୍ତରିକତା, ଶୁଦ୍ଧତା, ଗାଢ଼ତାର ଉଚ୍ଛଳିତ ରସୋଲ୍ଲାସରୁ କୁନ୍ତଳା ମଧ ପ୍ରଭାବମୁକ୍ତ ନୁହନ୍ତି । ପୁଣି ପ୍ରତିବେଶୀ ବଂଗଳା ସାହିତ୍ୟ ସେତେବେଳେ କବୀନ୍ଦ୍ର ରବୀନ୍ଦ୍ରଙ୍କ ଉଜ୍ଜ୍ୱଳ ପ୍ରଭାରେ ଉଦ୍‌ଭାସିତ । ତାଙ୍କର ଉପନିଷଦୀୟ ଭାବମାନସ ସହ ବୈଷ୍ଣବୀୟ ରାଗାନୁଗା ସ୍ୱରର ପ୍ରୀତି ରସାଣିତ ଅସଂଖ୍ୟ କବିତା ଓ ସଂଗୀତ ଓଡ଼ିଅ କାବ୍ୟ ଧାରାକୁ ମଧ ସ୍ପର୍ଶ କରିଥିଲା । ହିନ୍ଦୀ ସାହିତ୍ୟରେ ତାହା ଛାୟାବାଦୀ କାବ୍ୟଯୁଗର ସୂଚନାକାଳ । କୁନ୍ତଳା ଏ ସବୁର ଉତ୍ତରାଧିକାରିଣୀ ରୂପେ ଓଡ଼ିଆ ସାହିତ୍ୟରେ ଆବିର୍ଭୂତ । ଅକାଳରେ ତାଙ୍କର ଜୀବାବସାନ ଘଟିନଥିଲେ ଓଡ଼ିଆ ସାହିତ୍ୟରେ ହୁଏତ ଛାୟାବାଦୀ ଯୁଗ ଭଳି ଏକ ସମାନ୍ତରାଳ ସଫଳ କାବ୍ୟ-ଯୁଗର ଅଭ୍ୟୁଦୟ ଘଟିଥାନ୍ତା, ତାର ସ୍ୱର-ସାମ୍ରାଜ୍ଞୀ ହୋଇଥାନ୍ତେ କୁନ୍ତଳା । ସାମାନ୍ୟ ପରବର୍ତ୍ତୀ ହିନ୍ଦୀ ଛାୟାବାଦୀ କବି ମହାଦେବୀ ବର୍ମାଙ୍କ କବିତା ଓ ଗାନଗୁଡ଼ିକ ବହୁ ପରିମାଣରେ କୁନ୍ତଳାଙ୍କ ଗୀତି କବିତାର ସମଧର୍ମୀ, ଯଦିଓ ପରେ ମହାଦେବୀଙ୍କ ପରିଣତ ବୟସ ଓ ପରିପକ୍ୱ ଚେତନା ସେଗୁଡ଼ିକୁ ଅଧିକ ଗାଢ଼, ତୀବ୍ର, ଗଭୀର ଓ ଭାବସାନ୍ଦ୍ର କରିଛି ।

କୁନ୍ତଳାକୁମାରୀଙ୍କ କବିତାଗୁଡ଼ିକର ମୁଖ୍ୟ ବିଭାବ ତିନୋଟି : (୧) ଜାତୀୟବାଦୀ ଚେତନା, (୨) ପ୍ରକୃତି, (୩) ପ୍ରେମ । ପ୍ରକୃତି ଓ ପ୍ରେମ ଭାବନାତ୍ମକ କବିତାରେ ପ୍ରାୟଶଃ ଅଧ୍ୟାତ୍ମ ଜିଜ୍ଞାସା ଓ ବିଭୁ - ପ୍ରୀତି ପ୍ରତିଫଂଳିତ । କବିଙ୍କ ଅଧ୍ୟାତ୍ମ ପ୍ରବଣତା ଏ ଦୁଇ ଉପାଦାନକୁ ଆଧାର କରି ପ୍ରକାଶିତ ।

କୁନ୍ତଳାଙ୍କ ରହସ୍ୟବାଦୀ ପ୍ରେମ କବିତାମାନଙ୍କ ସଂପର୍କରେ କୁହାଯାଇଥାଏ ଯେ ଏହା ତାଙ୍କର ଲୌକିକ ପ୍ରେମାନୁଭୂତିର ଉଦାତ୍ତୀକରଣ ପ୍ରୟାସ । କୁନ୍ତଳାଙ୍କ ପୂର୍ବ ଓଡ଼ିଆ କାବ୍ୟରେ ବ୍ୟକ୍ତିଗତ ପ୍ରଣୟର ଚିତ୍ର ବିକ୍ଷିପ୍ତ, ଭିନ୍ନ ଚରିତାଶ୍ରିତ ଓ ରୂପକାତ୍ମକ ଥିଲା । ସାମାଜିକ ମର୍ଯାଦା ସଚେତନ ସେ ପ୍ରେମର ସ୍ୱର ହୁଏତ କଳ୍ପନାଶ୍ରୟୀ ବା ଆଧ୍ୟାତ୍ମିକ ବ୍ୟଂଜନାଶ୍ରୟୀ ହେଉଥିଲା । କାବ୍ୟ ଚେତନାରେ ବ୍ୟକ୍ତିଗତ ପ୍ରେମର ପ୍ରତୀକାତ୍ମକ ଛବି ରହୁଥିଲା । କୁନ୍ତଳାଙ୍କ ପ୍ରୀତି-ଉପାସନା ଲୌକିକରୁ ଅଲୌକିକତାକୁ ଏକ ଉତ୍‌କ୍ଷେପ ବୋଲି ବିଚାର କରାଯାଏ । ହୁଏତ ଲୌକିକ ପ୍ରେମର ଅଚରିତାର୍ଥତା ବିଭୁ-ପ୍ରୀତି କାମନାରେ ସାର୍ଥକତା ଖୋଜିଛି । ପାର୍ଥିବ ପ୍ରେମ ଅପାର୍ଥିବ ପ୍ରୀତି ସାଧନାରେ ଉନ୍ମୁଖ ହେବାର ଦୃଷ୍ଟାନ୍ତ ପ୍ରେମର ଆଧ୍ୟାତ୍ମିକ ଇତିହାସରେ ତ ବିରଳ ନୁହେଁ । ମନସ୍ତତ୍ତ୍ୱ ଦୃଷ୍ଟିରୁ ଲୌକିକ ପ୍ରୀତିରୁ ଯେତେବେଳେ ଭାବଲୋକର ଅତୀନ୍ଦ୍ରିୟ ସ୍ତରକୁ ଚେତନାର ନିଷ୍କ୍ରମଣ ଓ ବିସ୍ତାର ଘଟେ, ସେତେବେଳେ ଅପାର୍ଥିବ ଦିବ୍ୟ ସତ୍ତା ପ୍ରତି ତାର ଆକାଂକ୍ଷା ଓ ଅପେକ୍ଷାର ସଂଭାବନାକୁ ଏଡ଼ାଇ ନେଇ ହୁଏ ନାହିଁ । ଇନ୍ଦ୍ରିୟ ଓ ବାସନାର ସ୍ଥୂଳସ୍ତରମାନଙ୍କୁ ଅତିକ୍ରମ କରି ଅଧ୍ୟାତ୍ମ ପ୍ରେମ ତାର ରୂପୋତ୍ତର ପ୍ରସାରଣରେ ମର୍ତ୍ତ୍ୟ ଓ ଅମର୍ତ୍ତ୍ୟର ସଂଯୋଗ ସାଧନ କରେ । ପୁଣି ଭାରତୀୟ ସଂସ୍କୃତି ତ ଚିରକାଳ ତାର କାବ୍ୟାଦର୍ଶକୁ ପାର୍ଥିବ ପ୍ରଣୟର ଅପାର୍ଥିବ ଉନ୍ମୁଖତା ଦିଗରେ ସଂପ୍ରେରିତ କରିଆସିଛି ।

ନିଜର ଲୌକିକ ପ୍ରୀତି ସଂପର୍କକୁ ସୀମା-ଅସୀମର ନିତ୍ୟ ସଂବଂଧଭିତରକୁ କବି ଉତ୍‌ପ୍ରେକ୍ଷିତ କରିଦେବା ପ୍ରୟାସର ସାକ୍ଷୀତ ଇତିହାସ (ଜୀବନ ଚରିତ-ଚକ୍ରଧର ମହାପାତ୍ର) ମାତ୍ର କବିଚିତ୍ତର ପାର୍ଥିବ ପ୍ରେମ କିଭଳି କେଉଁ ଉପଲବ୍ଧି ଭିତରେ ତାଙ୍କୁ ତାଙ୍କ ଅଲୌକିକ ପ୍ରେମ-ସ୍ୱରୂପଙ୍କ ସହ ଆତ୍ମାର ସୂକ୍ଷ୍ମ ସଂବଂଧରେ ବାନ୍ଧି ରଖିଥିଲା ତାର ସାକ୍ଷ୍ୟ ସେ ଇତିହାସରୁ ମିଳିବନାହିଁ । ମର୍ତ୍ତ୍ୟପ୍ରଣୟ ଭୋଗ ବାସନା ଭିତରୁ କବିପ୍ରାଣରେ ଦେହାତୀତ ପ୍ରୀତିର ଅଭିଳାଷଟି କିଭଳି ଜାଗରିତ ହୋଇଯାଇଥିଲା, ଚେତନାର ସେ ଗୂଢ଼ ରହସ୍ୟକୁ ସଂଧାନ କରିବା ଇତିହାସର ସାଧ୍ୟାତୀତ । କବିଙ୍କ କାବ୍ୟାନୁଭବରେ ଦେହ ଓ ଦେହାତୀତ, ରୂପ ଓ ରୂପାତୀତ ପ୍ରେମର ଏକତ୍ର ନିବାସ ରହିଛି ।

କବିଙ୍କ ସ୍ୱୀକାରୋକ୍ତିରେ ତାଙ୍କର ପ୍ରେମଚିନ୍ତାମଣି ଗ୍ରଂଥର ସଂଗୀତଗୁଡ଼ିକ ତାଙ୍କ ବ୍ୟକ୍ତିଗତ ଲୌକିକ ଅନୁଭବର ଗାନ ଯାହାକୁ ସେ ପରେ ଶ୍ରୀକୃଷ୍ଣ ଓ ଶ୍ରୀମତୀ ନାମରେ ଆରୋପ କରି ବୈଷ୍ଣବ-ପଦାବଳୀର ଅନୁସରଣରେ ରାଗାନୁଗା ପ୍ରୀତିର କାବ୍ୟଗ୍ରଂଥ ସଜାଇଛନ୍ତି । ତାଙ୍କର ସବୁ ପ୍ରେମ କବିତା ଏକାନ୍ତ ଲୌକିକ ଓ ବିଭୁ ଆରୋପିତ ବୋଲି ମଧ୍ୟ ମନ୍ତବ୍ୟ ରହିଛି । ମାତ୍ର ସବୁ ଲୌକିକ ପ୍ରେମ-ଗାନକୁ ଈଶ୍ୱରପିତ କରିଦେଇ ହୁଏନାହିଁ । ଈଶ୍ୱର ଓ ବ୍ୟକ୍ତିର ରୂପଚେତନାର ଭିନ୍ନତା ଓ ସ୍ୱରଛନ୍ଦତା କବିତାର ଭାଷା-ରୂପ ଭଳି ତୀକ୍ଷ୍ଣ ଦର୍ପଣର ଆଖିରେ ନିଶ୍ଚେ ଧରା ପଡ଼ିଯିବ । ପ୍ରୀତିର ଅନୁଭୂତି ତ ଚିରକାଳ ବ୍ୟକ୍ତିଗତ । ତାର ଉଦ୍‌ବୋଧନ କିନ୍ତୁ ସବୁବେଳେ ଲୌକିକ ହେବା ଅପରିହାର୍ଯ୍ୟ ନୁହେ । ପ୍ରକୃତି ସଂଯୋଗ ବା କିଛି କିଛି ହୃଦୟକୁ ପ୍ରଭାବିତ କରିବା ଭଳି ଶକ୍ତିଶାଳୀ ଘଟଣା ପ୍ରବାହରେ ମଧ୍ୟ ବ୍ୟକ୍ତି ଅଲୌକିକ ପ୍ରେମାନୁଭବକୁ ସଂଚାରିତ ହେବାର ସଂବାଦ ବିରଳ ନୁହେଁ । ଯେଉଁ ପ୍ରେମ ବ୍ୟକ୍ତିକୁ

ଆସ୍ପୃହା କରିପାରେ, ବିଭୁକୁ କରି ନ ପାରିବ କାହିଁକି ? - ଏବଂ ତାହା ଯଦି କୁନ୍ତଳାଙ୍କ ଭଳି ଜଣେ ଭଗବତ୍ ପରାୟଣା, ଅଧ୍ୟାତ୍ମପ୍ରବଣା, ଉନ୍ନତ ଚେତନଶୀଳା ନାରୀ ହୃଦୟର ହୋଇଥାଏ !

କୁନ୍ତଳା ଅଧ୍ୟାତ୍ମ-ଦର୍ଶନର କିଛି ନୁହନ୍ତି, ଭକ୍ତି-କବି ମଧ ନୁହନ୍ତି । ମାତ୍ର ତାଙ୍କ ଭିତରେ ଏକ ରୋମାଣ୍ଟିକ ସୌନ୍ଦର୍ଯ୍ୟଗ୍ରାହୀ ପ୍ରକୃତି ରହସ୍ୟ ସଂଧାନୀ ତୀକ୍ଷ୍ଣ ପ୍ରବଣତା ଥିଲା । ଅନୁଭୂତିର ପୃଷ୍ଠଭୂମିରୁ ଜୀବନ ଓ ଜଗତର ରହସ୍ୟ ଖୋଜିବା ତାଙ୍କର କାବ୍ୟଜିଜ୍ଞାସା ଥିଲା । ତାଙ୍କର କାବ୍ୟଧର୍ମ ଧର୍ମାନୁଶାସନର ବଶବର୍ତ୍ତୀ ନଥିଲା । ମାତ୍ର ଏକ ଗଭୀର ବିଶ୍ୱାସ, ସ୍ଥିର ନିର୍ଭରତା ଓ ପ୍ରାଣମୟ ଆକୁତି ନେଇ ସେ ପରମ ସତ୍ତାଙ୍କୁ ଜୀବନ ଦେବତା ରୂପେ ଅନ୍ତରତମ କରି ପାଇବାକୁ ଚାହିଁଛନ୍ତି । (ଜଗତର ଜ୍ଞାନ ଥାଉ ଜଗତରେ, ମୁଁ ପୂଜିବି ପଦ ପ୍ରେମ ବିଶ୍ୱାସରେ (ଅଞ୍ଜଳି)) ସେଇ ପ୍ରବଣତା କେତେବେଳେ ଲୌକିକ ପ୍ରଣୟ ବିଳାସ ତ କେତେବେଳେ ଅଲୌକିକ ପ୍ରେମ - ଉଚ୍ଛ୍ୱାସ ରୂପେ ଉଚ୍ଚାରିତ ହୋଇଛି । କୁନ୍ତଳାଙ୍କ ସବୁ ପ୍ରେମକବିତା କେବଳ ଆରୋପିତ ଓ ଉତ୍ସର୍ଗଧର୍ମୀ ନଥିଲା । ତାଙ୍କ ଆତ୍ମାନୁରାଗର ବିଶ୍ୱସ୍ତ ସ୍ତର ଅନେକତ୍ର ଆବେଗମୟ ମୂର୍ଦ୍ଧସ୍ପର୍ଶରେ ତାଙ୍କ କାବ୍ୟସ୍ୱରକୁ ସ୍ପନ୍ଦିତ କରିଥିବାର ଅନୁଭବ କରିହୁଏ ।

କୁନ୍ତଳାଙ୍କ କାବ୍ୟଚେତନା ସ୍ୱାଭାବିକ୍ ନାରୀସତ୍ତାର ଆଶ୍ରୟରେ ମୁଖ୍ୟତଃ ସରଳ ଭାବବିଶ୍ୱସ୍ତ ଓ ବୌଦ୍ଧିକ ଗାମ୍ଭୀର୍ଯ୍ୟମୁକ୍ତ । କୁନ୍ତଳା ମୁଖ୍ୟତଃ ରୋମାଣ୍ଟିକ କବି ଏବଂ ପ୍ରେମଭାବନାର କବି । ତାଙ୍କର ବ୍ୟକ୍ତିଗତ ଜୀବନ ଓ ସାମାଜିକ ଚେତନା ତଥା ଜାତି ମୁକ୍ତିର ଯେଉଁ ସ୍ୱପ୍ନ ବାରମ୍ବାର ଅଭିବ୍ୟକ୍ତି ଲୋଡ଼ିଛି ସେଇ ମୁକ୍ତିର ନିଶା ତାଙ୍କ ପ୍ରେମଭାବନାର ସ୍ୱଚ୍ଛନ୍ଦତାକୁ ମଧ ଆସ୍ପୃହା କରିଛି । କୁନ୍ତଳାଙ୍କ ପ୍ରେମାବେଦନ ହୃଦୟରୁ ଉଚ୍ଚାରିତ ହୋଇ ସହଜ ଅନୁଭବ ରୂପେ ତୀକ୍ଷଣ ନିର୍ଭୀକ ଓ ଆବେଗ ଦୀପ୍ତ ହୋଇଛି ।

ନାରୀସତ୍ତାର ରୁଦ୍ଧ ପ୍ରଣୟାବେଗ କାବ୍ୟକଳ୍ପନାର ସହାୟତା ଲୋଡ଼ିଛନ୍ତି । କବି ଭାବରାଜ୍ୟରେ ଯେଉଁ ପ୍ରେମର ଆନନ୍ଦଚାହାନ୍ତି, ବାସ୍ତବ ଜୀବନରେ ତାର ଆଘାତକୁ ସହ୍ୟ କରିଛନ୍ତି । ପ୍ରେମର ବ୍ୟଥା ଭିତରେ ହିଁ ତାଙ୍କର ପ୍ରେମର ଆଧ୍ୟାତ୍ମରୂପ ଅନ୍ୱେଷଣ । ବାସ୍ତବ ପ୍ରେମ ଜୀବନର ଘାତ ପ୍ରତିଘାତ ଭିତରୁ ତାଙ୍କର କାବ୍ୟସାଧନା ଯେପରି ତାଙ୍କ ଆତ୍ମାର ଏକ ବିମୁକ୍ତି ପ୍ରୟାସ ।

କୁନ୍ତଳାଙ୍କ ପ୍ରୀତିଚେତନାର ପ୍ରମୁଖ ସ୍ୱର ବିରହ । ଅଞ୍ଜଳି, ଉଚ୍ଛ୍ୱାସ, ଅର୍ଚ୍ଚନା, ପ୍ରେମଚିନ୍ତାମଣି ସେ ଚେତନାର ଏକ ଏକ ସାର୍ଥକ ସୋପାନ । ଯୌବନର ପ୍ରଭାବରେ ଜୀବନକୁ ପ୍ରେମ ପୁଷ୍ପାଞ୍ଜଳି ଦାନ, ପ୍ରକୃତି-ଚିତ୍ରାତ୍ମକ କବିତାରେ ପ୍ରେମର ଆଶ୍ୱାସନାମୟ ସଂଭାଷଣ; ସମଗ୍ର କାବ୍ୟ କଳେବରରେ ଏକ ମଧୁର ପୀଡ଼ାର ସ୍ନିଗ୍ଧ ସଜ୍ଜଳତା ବିଦ୍ୟମାନ । ବ୍ୟର୍ଥତାର ବେଦନା ତାଙ୍କ ହୃଦୟକୁ କ୍ଷତବିକ୍ଷତ କରିଥିଲେ ମଧ କାବ୍ୟସ୍ୱର କେବେ ପ୍ରେମ ସଂପର୍କରେ ଅବସାଦଗ୍ରସ୍ତ ହୋଇନାହିଁ ।

କୁନ୍ତଳାଙ୍କ କାବ୍ୟ ସ୍ୱରରେ ସଂବୋଧିତ ପ୍ରଣୟୀ ପାର୍ଥିବ ବ୍ୟକ୍ତି କି ଅପାର୍ଥିବ ଦେବତା, ତାର ନିର୍ଣ୍ଣୟ ବାହାରେ ତାଙ୍କ ପ୍ରତି ଉଦ୍ଦିଷ୍ଟ ପ୍ରୀତିର ଉଚ୍ଚାରିତ ସ୍ୱରଟି କେତେଦୂର ରହସ୍ୟବାଦୀ ଲକ୍ଷଣାକ୍ରାନ୍ତ,

ତାହାହିଁ ତାଙ୍କ କାବ୍ୟ ଭାବନାରେ ବିଚାରଣୀୟ । ରହସ୍ୟବାଦୀ ପ୍ରଣୟଗାନର ସ୍ୱଗତାଳାପ ସ୍ଥୂଳରୁ ସୂକ୍ଷ୍ମକୁ, କ୍ଷୁଦ୍ରରୁ ବିଶାଳକୁ, ଇନ୍ଦ୍ରିୟର ରୂପାସକ୍ତିରୁ ଅତୀନ୍ଦ୍ରିୟ ଅନୁରକ୍ତିକୁ । ସେ ପ୍ରେମର ଜାଗରଣ ଆତ୍ମାରେ, ସଂଚାରଣ ଦେହ ମନପ୍ରାଣ ସଂବେଗରେ । ଖ୍ରୀ୧୯.୨୨ ରୁ ୨୯.୧୯୩୦ - ଏଇ ଆଠ ବର୍ଷ ଧରି କବିଙ୍କର ଯେପରି ଗୋଟିଏ ଅନୁଭୂତି ଆଚ୍ଛନ୍ନତା, ଗୋଟିଏ ଆବେଗମୁଖର ସ୍ୱଗତାଳାପ । ପୂଜାମନ୍ତ୍ରର ଆଦ୍ୟ ଉଚ୍ଚାରଣ ଅଞ୍ଜଳି । ଏଥିରେ ଆଦ୍ୟ ପ୍ରଣୟାନୁଭବର ପ୍ରସ୍ତୁତି, ବିଶ୍ୱାସ, ସ୍ଥିରତାର ମାନସିକତା ପ୍ରକଟିତ । ଅଞ୍ଜଳି ଯଥାର୍ଥରେ ଶ୍ରଦ୍ଧା ଅନୁରାଗର ଏକ ପୂର୍ଣ୍ଣ-ଅଞ୍ଜଳି । ଏଥିରେ ଭଗବାନ ଓ ଲୌକିକ ପ୍ରେମ-ସ୍ୱରୂପ ଅନେକତ୍ର ଅଭିନ୍ନ ହୋଇଯାଇଛନ୍ତି । ଏକ ବିରାଟ ସତ୍ତାର ଅଂଶିଦାର-କ୍ଷୁଦ୍ରତା ସତ୍ତ୍ୱେ ତାହାହିଁ କବିଙ୍କ ପ୍ରେମର ପ୍ରତ୍ୟୟ-ଭିତ୍ତି ରୂପେ ଉପସ୍ଥାପିତ । କ୍ଷୁଦ୍ରତା ପାଇଁ ଗ୍ଲାନି ନାହିଁ, ଦୈନ୍ୟ ପାଇଁ ସଂକୋଚ ନାହିଁ । ବରଂ ବିରାଟରେ ଅନୁରାଗଭାଜନ ସୂତ୍ରରେ କ୍ଷୁଦ୍ର ମଧ୍ୟ ଗୌରବାନ୍ୱିତ ।

କବି ହୃଦୟର ଆଶା ଯେପରି ଏକ ଉଜ୍ଜ୍ୱଳ ଦୀପସ୍ତମ୍ଭ ଯାହା ତାଙ୍କ ଚେତନାକୁ ନିରବଧି ଆଲୋକ ପ୍ରତ୍ୟାଶୀ କରି ରଖିଛି । ଉଚ୍ଛ୍ୱାସର ସଂବୋଧନାତ୍ମକ ପ୍ରକୃତି-ଗୀତିମାନଙ୍କରେ ସେ ଆଶାନ୍ୱିତ ଆଲୋକ ପ୍ରତ୍ୟୟ ଉଜ୍ଜ୍ୱଳତର ହୋଇଉଠିଛି । ଏକ ଅଲକ୍ଷ୍ୟ ପ୍ରେମ ଯେପରି ଛାୟାପରି ତାଙ୍କ ଜୀବନକୁ ଅନୁସରଣ କରିଛି । ସେ ମହାନ୍ ପ୍ରେମ ପ୍ରତିଦାନ କବିଂକ କ୍ଷୁଦ୍ରତା ପାଖେ ସଂଭବ ନୁହେଁ । ଆତ୍ମଗ୍ଲାନି ପ୍ରଗାଢ଼ । ପୁଣି ପ୍ରାଣର ପ୍ରଭୁ ବୋଲି ଯାହାଙ୍କୁ ଜାଣନ୍ତି, ତାଙ୍କର ତୁଷ୍ଟି ସାଧନ କରି ପାରିନାହାନ୍ତି । କବି ଅନୁତାପ-ସଜଳ । ଅଶ୍ରୁ-ଆକୁଳ ବେଦନାର ତୀବ୍ରତା ପ୍ରୀତିର ପ୍ରତ୍ୟୟକୁ ଗଭୀରତର କରି ତୋଳିଛି । ଜୀବନର ଦୁଃଖଭାର ଯେଉଁ ଅଶ୍ରୁବିନ୍ଦୁ ହୋଇ ଧରାବୁକୁରେ ଝରିପଡ଼େ ଏସବୁରି ଅଲକ୍ଷ୍ୟରେ ତାହା ପ୍ରେମ ଦେବତା ପଦତଳେ ସ୍ଥାନପାଏ । ହୃଦୟର ସବୁ ବ୍ୟଥାତୁର ସଂଗୀତ ବିଶ୍ୱଜନର ଅଶ୍ରୁତ ରହିଲେବି ତାଙ୍କ ଶ୍ରୁତିରେ ବାଜେ । ଯାତ୍ରାର ସବୁ ପଥକ୍ଳାନ୍ତିକୁ ନିଜ ସ୍ନେହାଂଚଳରେ ପୋଛି ଦେଇ ନୈରାଶ୍ୟର ଘନାନ୍ଧକାର ଭିତରେ ସମ୍ମୁଖ ରାସ୍ତାକୁ ଦୀପାନ୍ୱିତ କରିରଖନ୍ତି ।

ପ୍ରେମ ସ୍ୱର୍ଗୀୟ, ମାତ୍ର କବି ହୃଦୟ ମାଟି ପୃଥିବୀର । ତଥାପି କବିଙ୍କର ବିଶ୍ୱାସ ଜୀବନବ୍ୟାପୀ ଆରାଧନା ବ୍ୟର୍ଥ ହେବନାହିଁ । ଆତ୍ମାପଦ୍ମ ମଉଳି ଯିବନାହିଁ । କବି ବିଶ୍ୱାସର ଗାନ କରନ୍ତି, ''ଧ୍ରୁବତାରା ମୋର ଅନ୍ଧକାର ନଭେ, ଉଜ୍ଜ୍ୱଳେ ହସିବ ପ୍ରେମର ଗୌରବେ'' । ପ୍ରେମର ସମ୍ମୋହନ ଦାନ କବିଙ୍କୁ ପରମଐଶ୍ୱର୍ଯ୍ୟମୟଙ୍କ ପାଖକୁ ଉଠାଇ ନେବ । ସେ ସର୍ବତ୍ର ରାଜିତ । ତାଙ୍କ ପ୍ରେମର ବାର୍ତ୍ତା ନୀଳାକାଶରେ, ନଦୀରେ, ତରଂଗରେ, ଫୁଲର ମହକରେ, ଫଗୁଣର ପବନରେ ସଂଚରିତ । କବିଙ୍କର ପୂଜା ସେଇ ସ୍ୱୟଂ ପ୍ରେମକୁ । ସେ ଧର୍ମ ଧାରଣା, ତତ୍ତ୍ୱ ଦର୍ଶନ ବୁଝନ୍ତି ନାହିଁ । ହୃଦୟର ପ୍ରେମହିଁ ତାଙ୍କର ଏକମାତ୍ର ପୂଜା ଉପଚାର । ତଟିନୀ ତରଂଗରେ ତାଙ୍କ ଏକାଗ୍ର ପ୍ରେମାର୍ଚ୍ଚନାର ସ୍ୱର - କି କରି ତୋଷିବ ପ୍ରିୟ ପ୍ରଭୁମନ ନ ଜାଣେ ଉଚିତ ସେବା/ନିତି ପ୍ରତି ତାର ହୋଇଛି କର୍ତ୍ତବ୍ୟ ଦେହ ମନ ପ୍ରାଣ ଦେବା'' ନାରୀସତ୍ତାର ପ୍ରେମଭକ୍ତି ପରଂପରା ସାମଗ୍ରିକ ସମର୍ପଣର ଆକୃତିରେ ହିଁ ପ୍ରକାଶିତ । ସେ ପ୍ରିୟ ଲୌକିକ ବା ଅଲୌକିକ ହୁଅନ୍ତୁ । ପ୍ରୀତିସାଧନାରେ ଆପଣାକୁ ପୂର୍ଣ୍ଣ ନୈବେଦ୍ୟ କରିଦେବା ସେଠି ଅନିବାର୍ଯ୍ୟ ହୋଇଯାଏ ।

କୁନ୍ତଳାଙ୍କ ପ୍ରେମଭାବନା ପୂରା ଆକାଶପହଁରା ନୁହେଁ, ଧରଣୀର ବାସ୍ତବତା, ପାର୍ଥିବତାର ଜାଗ୍ରତ ଚେତନା, ଭିତରେ ସେ ଆବେଗର ପୁଷ୍ଟି । ଏଇ ଜଗତରେ, ଏଇ ଜୀବନରେ କବି ଅନନ୍ତ ପ୍ରେମସ୍ୱରୂପଙ୍କ ସଂଧାନ ପାଇଛନ୍ତି ବୋଲି ବିଶ୍ୱାସ କରନ୍ତି । ହୁଏତ ନରଦେହୀ ପ୍ରେମିକ ସେଇ ଅମୂର୍ତ୍ତ ପ୍ରେମମୟଙ୍କ ବ୍ୟକ୍ତି ରୂପ । ତାଙ୍କର ପ୍ରୀତି ଅପାର୍ଥିବ ପ୍ରେମର ସ୍ପର୍ଶ । ରବୀନ୍ଦ୍ରନାଥ ଯେ କହିଛନ୍ତି, ଯାହାକୁ ଆମେ ଭଲପାଉ, ତାରି ମଧରେ ଆମେ ଅନନ୍ତର ପରିଚୟ ପାଉ,-ବ୍ୟକ୍ତିଗତ ପ୍ରେମଚେତନା ଭିତରେ କବିଙ୍କର ଭାବ ଓ ଅନୁଭବରେ ସ୍ୱୟଂ ପ୍ରେମର ଶାଶ୍ୱତ ରାଜ୍ୟକୁ, ଯାତ୍ରା-ସକ୍ରେଟିଶ-ପ୍ଲାଟୋଙ୍କ ବିଚାରର ପ୍ରତିଧ୍ୱନିତ କରେ । Love in its depth is a contact of the divine possibility or Reality in oneself with the Divine Possiblility of Reality in the loved" - Sri Aurobindo Letter's Vol - 23 Page - 773 କବିଙ୍କ ବ୍ୟକ୍ତିନିଷ୍ଠ ପ୍ରେମ ଯେପରି ଏକ ସୋପାନ ଏକ ମାଧ୍ୟମ, ଅସୀମର ଚକିତସ୍ପର୍ଶ, ଅନନ୍ତର ତଡ଼ିତ ପ୍ରକାଶ । କବି ଯେପରିକି ହୃଦୟ ବୀଣାର ଗୋଟିଏ ସ୍ପର୍ଶ ଝଂକାରରେ ସଂଗୀତରେ ନିଖିଳ ସୁଧାଲୋକକୁ ପ୍ରବେଶ କରନ୍ତି, ''ସସୀମରେ ଆଜି ଅସୀମ ଲୋକନେ ପରାଣଟି ପଡ଼େ ଉଛୁଳି ।

କୁନ୍ତଳାଙ୍କ ପ୍ରଣୟଗାନର ପ୍ରମୁଖ ସ୍ୱର ଆବେଗ ପ୍ରବଣତା ଓ ହୃଦୟର ଏକନିଷ୍ଠତା ଆବେଗ ଆକୁଳତା ବର୍ଜିତ ଜ୍ଞାନମୁକ୍ତି ଆକାଂକ୍ଷା ସେଥିରେ ଶୁଭେନାହିଁ । ମନରୁ ଦେହକୁ, ଦେହରୁ ହୃଦୟକୁ ବିଚ୍ଛିନ୍ନ କରି ଅଖଣ୍ଡ ପ୍ରେମ ବିଗ୍ରହକୁ ନିରାଳଂବ ସ୍ଥିତିରେ ଲୋଡ଼ିବା ନାରୀ ସତ୍ତାର ସାଧନା ଅନୁକୂଳ ନୁହେଁ । ତେଣୁ ଭକ୍ତି ବା ଭାବ-ସାଧନା ନାରୀର ଆଧ୍ୟାତ୍ମ - ଉପଲବ୍ଧିର ଇତିହାସ ସହ ଅନିବାର୍ଯ୍ୟତଃ ଜଡ଼ିତ । କୁନ୍ତଳାଙ୍କ ପ୍ରେମ ଅଦେହୀ ପ୍ରେମର କଥା କହିନାହିଁ । ମାତ୍ର ଦେହକୁ ପ୍ରେମର ସମଗ୍ର ଓ ଶେଷ ଆଧାର ବୋଲି ମାନିନେଇ ନାହିଁ ମଧ୍ୟ । ଶୁଦ୍ଧ ପ୍ରେମକୁ ହିଁ ସେ ପରିପୂର୍ଣ୍ଣ ଭାବେ କାମନା କରେ । ନିଜକୁ ଶୁଦ୍ଧ କରିବାର ପ୍ରାର୍ଥନା ତେଣୁ ତାଙ୍କର - ମୋ ମନ ଲୁହା ଯଦି ତୁ ଅୟସ୍କାନ୍ତ/ ମୋତେ ପରଶି ସୁନା କର ସୁକାନ୍ତ'' (ପୂଜା) । ପ୍ରେମକୁ ସେ କଷଟି ବୋଲି ଜାଣନ୍ତି । ମନର ପରଖ ପାଇଁ କବି ପ୍ରସ୍ତୁତ । ''ମନର ପରଖ ମନ ସିନା ସଖା ସୁନାର ପରଖ କଷଟି'' ।

ପାର୍ଥିବତାର ଦୈନ୍ୟ ସତ୍ତ୍ୱେ କବି ଆତ୍ମାର ପବିତ୍ରତାରେ ବିଶ୍ୱାସୀ । କାମନାସାର ଜୀବର ଆତ୍ମାରେହିଁ ଦିବ୍ୟ ପ୍ରେମର ଉଦ୍‌ବୋଧନ । ତେଣୁ ଜୀବର ସର୍ବଶେଷ ସଂପଦ ଆତ୍ମା ଆଉ ଆତ୍ମାର କାମନା ସ୍ୱୟଂ ପ୍ରେମରୂପଙ୍କୁ । ଆତ୍ମାର ସେ ମୁଗ୍ଧ ଅନୁରାଗକୁ, ଅନ୍ତରର ସ୍ନିଗ୍ଧ ଅନୁଭୂତିଟିକୁ ମୃଗନାଭି କସ୍ତୁରୀ ଭଳି ମୃଦୁ ମହକିତ ହୋଇ ରହିଥିବାକୁ କବି ଆଶାପୋଷଣ କରନ୍ତି, ''କସ୍ତୁରୀ ଘେନି ଯେହ୍ନେ ମୃଗନାଭିରେ/ପୂରି ରହିଥା ତେହ୍ନେ ହୃଦ ଭିତରେ'' ।

କୁନ୍ତଳାଙ୍କ କାବ୍ୟମାନସର ପୂର୍ଣ୍ଣ ପରିଚୟ ତାଙ୍କ ପ୍ରକୃତି ଚେତନା ସଂବଳିତ କବିତାମାନଙ୍କରୁ ଉପଲବ୍ଧ । ସେଥିରେ ତାଙ୍କର ଆଧ୍ୟାତ୍ମିକ ଆକୁତି, ଲୌକିକ ପ୍ରେମର ତୀବ୍ରତା ଓ ରହସ୍ୟବାଦୀ ଦାଂପତ୍ୟ ଭାବନାର ସମନ୍ୱୟ ଦେଖାଯାଏ । ଦ୍ୱୈତ ଓ ଅଦ୍ୱୈତର ନିର୍ଦ୍ୱନ୍ଦ ସହାବସ୍ଥାନ ସୂତ୍ରରେ ପ୍ରକୃତି ଈଶ୍ୱରଙ୍କର ପ୍ରକାଶିତ ରୂପ - ଏଇ ଉପନିଷଦୀୟ ଭାବମାନସର ପ୍ରତିଫଳନ ଉତ୍ସର ଗୀତି କବିତା ମାନଙ୍କରେ

ପ୍ରଚୁର । ''ସାରା ବିଶ୍ୱେ ତୁମ ଚରଣରେଖାଗୋ'' - ସେଇଥିପାଇଁତ ରାତ୍ରିର ଆକାଶରେ, ବିଦ୍ୟୁତର ଚମକରେ, ପତ୍ରର ମର୍ମରରେ, ନଦୀର କଳତାନରେ ଓ ହୃଦୟର ଅଶ୍ରୁଆନନ୍ଦରେ ସେ ଛାୟାମୟ ମିଶି ରହିଛନ୍ତି ।

ଉଚ୍ଛ୍ୱାସର ନିଃସର୍ଗଭାବନାତ୍ମକ କବିତାଗୁଡ଼ିକ କବିଙ୍କ ଆଧାତ୍ମିକ ଅନୁଭାବନାର ସାକ୍ଷୀ । ସଚରାଚର ପ୍ରେମ ଲୌକିକ ହେଉ ବା ଅଲୌକିକ, ତାର ଅଭିବ୍ୟକ୍ତି କିନ୍ତୁ ଲୌକିକ ପ୍ରତୀକ ସଂଯୋଜନାରେ । ସେ ପ୍ରତୀକ ପ୍ରକୃତିରୁ ହିଁ ଆହରିତା ଶେଫାଳୀ, ତାରା, ଚନ୍ଦ, କମଳ ପ୍ରଭୃତି ପ୍ରାକୃତକ ବସ୍ତୁମାନ କବିଙ୍କ ଅନ୍ତରରେ ନିଖିଳ ସୃଷ୍ଟି ଓ ଶାଶ୍ୱତ ସତ୍ତାଙ୍କ ପ୍ରତି ରହସ୍ୟମୟ ଆବେଗ ଓ ଅନୁରାଗ ସୃଷ୍ଟି କରିଛି । ଏଗୁଡ଼ିକ ବିରହର ଉଦ୍ଦୀପନା-କବିତା ରୂପେ ନିର୍ଯ୍ୟାସିତ । ଏହି କବିତାରେ ରହସ୍ୟବାଦୀ ଲେଖନର ସ୍ୱରୂପ ଦ୍ୱିବିଧ ୧) ଆତ୍ମା-ପରମାତ୍ମା ସଂପର୍କରେ ମେଟାଫିଜିକାଲ ଅଭିବ୍ୟକ୍ତି ୨) ନିଜର ଅନ୍ତର୍ବେଦନାର ବିଶ୍ୱଚେତନା ସହ ସମ୍ମିଳ ସଂଯୋଗ । ସରଳ ଭାଷା, ସାବଲୀଳ ଗତିଛନ୍ଦ ଓ ତୀବ୍ର ଅନୁଭୂତିର ସ୍ପର୍ଶ ଘେନି ଏ ରଚନାମାନ, ବିଶେଷ କରି 'ଶେଫାଳି ପ୍ରତି' ଓଡ଼ିଆ କବିତା ରାଜ୍ୟରେ ଦୁର୍ଲଭ ମହିମା ଲାଭକରିଛି ।

ଆତ୍ମା-ପରମାତ୍ମା ସଂବଂଧ ଚିତ୍ର ଉପନିଷଦୀୟ ଐକ୍ୟତତ୍ତ୍ୱ ଆଧାରିତ କାବ୍ୟ ପ୍ରବଣତା କିନ୍ତୁ ଅଧିକ ଦ୍ୱୈତବାଦୀ ହୋଇଥାଏ । ଯୁଗ୍ମସତ୍ତାର ଅନୁଭବ ବିଳାସରେ ତାଙ୍କ କାବ୍ୟାନୁଚିନ୍ତା ଭାବଶବଳିତ । ଆତ୍ମା-ପରମାତ୍ମାଙ୍କ ଅନନ୍ତ ପ୍ରଣୟ ଓ ନିତ୍ୟ ମିଳନକାମନା ସତ୍ତ୍ୱେ କବି ଅଦୈତ ବିଲୟ ପାଇଁ ଉତ୍‌କଣ୍ଠିତ ନୁହଁନ୍ତି । ସେ ବରଂ ଚିର ପ୍ରଣୟର ଲୀଳା ପିପାସୁ । କ୍ଷୁଦ୍ର ଓ ବୃହତ୍, ସୀମା ଓ ଅସୀମର ଦ୍ୱୈତ ଚେତନାରେ ହିଁ ଅସଂଖ୍ୟ ରୂପକ ଆଶ୍ରିତ ସେ ଲୀଳାରସ ବିସ୍ତାର । ଆକାର ବିନୁ କେ ତୁମ ରୂପ ଦେଖେ / ସାରା ସଂସାର କେ ତୁମକୁ ନିରେଖେ / କେବା ତୁମ ରୂପ ହୃଦ୍‌ପଟେ ଲେଖେ / କେବା ଶାଳଗ୍ରାମ ବହେ'' (ଅଞ୍ଜଳି) କବିଙ୍କ ଦୃଷ୍ଟିରେ ସୀମାର ଲଘୁତା ବି ମର୍ଯ୍ୟାଦାପୂର୍ଣ୍ଣ । ମରଦେହେ ଅମରାତ୍ମା କରେ ଯା ବସତି-ସେ ଆତ୍ମା କମଳର ପ୍ରବିତ୍ରତା ଓ ପ୍ରୀତି-ସାର୍ଥକତା ପ୍ରତି କବି ପୂର୍ଣ୍ଣ ଆସ୍ଥାବତୀ । ଶେଫାଳୀ ପ୍ରତିରେ ତେଣୁ ଗାଇଛନ୍ତି ନ ଜାଣେ ମୋ ଆତ୍ମାଫୁଲ କି ସୌନ୍ଦର୍ଯ୍ୟେ ଚିତ୍ରିତ ।

ତୁଳନୀୟ - ତୁମ ମୁଝ୍‌ମେ ପ୍ରିୟ । ଫିର୍ ପରିଚୟେ କ୍ୟା ? /ଚିତ୍ରିତ ତୂ ମୈ ହୂଁ ରେଖାକ୍ରମ/ ମଧୁର ରାଗତୂ

ମୈସ୍ୱର ସଂଗମ/ତୂ ଅସୀମ ମୈ ସୀମାକା ଭ୍ରମ'' ମହାଦେବୀ ବର୍ମା ନିରଜା ।

ସ୍ଫୁଲିଂଗ ଓ ଓଡ଼ ମାନଙ୍କରେ ଏ ଲଘୁତାର ନିଃସଂକୋଚ ପ୍ରସାରଣ କରି ପୂର୍ଣ୍ଣ ଆଶ୍ୱସ୍ତିର ଗାନ କରିଛନ୍ତି ଯେ ଏହି କ୍ଷୁଦ୍ରତାହିଁ ବିରାଟକୁ ନିଜ ଭିତରକୁ ଆକର୍ଷଣ କରିବ ଓ ଅବଶେଷରେ ତାଙ୍କର ସମାଦର ଲଭିବ । ସୀମା ଯେ ଅସୀମର ନିତ୍ୟ ଲୀଳାଦୋସରା ସୃଷ୍ଟିଲୀଳାରେ ତେଣୁ 'ଅନନ୍ତ ଜୀବନ ପ୍ରାଣେ ଅନନ୍ତ ପ୍ରେରଣା ଧରି ଜାତ ଯେ ମାନବ, ଅନନ୍ତ ବିନାଶ ତାର କପାଳ ଲିଖନ ବୋଲି କବି ମାନି ପାରିନାହାନ୍ତି । ଜନ୍ମକୁ ଅକାରଣ ଭାବି ପାରିନାହାନ୍ତି । ଯେହେତୁ, ସେ କେଉଁ ଅନନ୍ତାର୍ଣ୍ଣବେ ମିଶିବା କାରଣ/ଅନନ୍ତ ପ୍ରେମର ଧାରା ବହେ ପ୍ରତିକ୍ଷଣ'' (ଅର୍ଚ୍ଚନା) ।

ମୃତ୍ୟୁ ପ୍ରତି କବିଙ୍କ ଦୃଷ୍ଟିଭଂଗୀ ଉପେକ୍ଷା ମୂଳକ । କବି ତ ଦେହମାତ୍ର ନୁହନ୍ତି । ଅମର ଆତ୍ମାର ଅଧିକାରିଣୀ । ଅଲଂଘ୍ୟ ମୃତ୍ୟୁ ଧରା ପ୍ରେମକୁ ଶାରୀରିକ ବିଚ୍ଛେଦର ସବଳ ଆଘାତ ଦିଏ ମାତ୍ର ଆତ୍ମାର ସ୍ୱର୍ଗୀୟ ପ୍ରୀତିକୁ ବିନାଶ କରି ପାରିବ ନାହିଁ । ଶେଫାଳୀ ଫୁଲଟି ପରି ହୁଏତ ମୃତ୍ୟୁରେ କବିଙ୍କ ତନୁ - ପୁଷ୍ପ ମଉଳିଯିବ, ମାତ୍ର ପ୍ରାଣର ପ୍ରେମାଭିଳାଷ, ପ୍ରଣୟାକାଂକ୍ଷା, ପ୍ରୀତିର ପ୍ରତ୍ୟୟ ଓ ଜନ୍ମାନ୍ତରର ପ୍ରତୀକ୍ଷା ଆଗ୍ରହ କଣ ଶେଷ ହୋଇଯିବ ? ଜୀବନ ଦେବତାଙ୍କ ଅନୁରାଗରେ ଜଗତରେ ସେ ଚିରଦିନ ଫୁଟି ରହିଥିବେ । କବିଙ୍କ ସ୍ୱରରେ ବିଷାଦ ଅଛି । ନିରାଶା ନାହିଁ । ତାଙ୍କ କାବ୍ୟ ଦର୍ଶନ ଦୁଃଖବାଦୀ ନୁହେଁ । କବି ଦୁଃଖରେ ସହଜ ଅସ୍ତିତ୍ୱକୁ ସ୍ୱୀକାର କରିଛନ୍ତି, ତାର ଭାବପ୍ରସାରିଣୀ ଶକ୍ତିକୁ ଆବିଷ୍କାର କରିଛନ୍ତି । ତାଙ୍କ କାବ୍ୟସ୍ୱରରେ ଅତୃପ୍ତ ବାସନାର ଚିତ୍ର ରହିଛି, ଅନନ୍ତ ପ୍ରତୀକ୍ଷା; ଶାଶ୍ୱତବିରହର ଆକୁଳତା ମର୍ମରିତ ହୋଇଛି; ତାସହ ଆତ୍ମସମର୍ପଣର ତନ୍ମୟତା ବି ରହିଛି । ପ୍ରଗାଢ଼ ଭାବାଭିଭୂତିରେ ଆଶା-ନିରାଶା. ସୁଖ-ଦୁଃଖ, ହସକାନ୍ଦର ଦ୍ୱନ୍ଦ୍ୱର ଚରମ ରୂପରେ ଏହି ଏକରୂପତାର ଆବେଶ ଯେ ହୁଏ, ସେଥିରେ ସୁଧା-ମଧୁର ଓ ବିଷ-ଜର୍ଜର ସବୁ କିଛି ପ୍ରିୟର ଦାନ ରୂପେ ବରଣୀୟ ହୋଇଯାଏ, । ପ୍ରେମର ଏଇ ମୂକ ବେଦନା ଦୃଷ୍ଟି କୁନ୍ତଳାଙ୍କ କାବ୍ୟସ୍ୱରରେ ପ୍ରଗାଢ଼ । ଭାବ ଆବେଶରେ ତନ୍ମୟତାରେ ସେ ସୃଷ୍ଟିର ପ୍ରତିକଣାରେ ପ୍ରିୟଙ୍କ ଅସୀମ ପ୍ରକାଶ ଝଲକ ଦେଖିଛନ୍ତି । କୋଟି କୋଟି ଚନ୍ଦ୍ର ସରୋବର ଜଳ ହୃଦାକାଶେ ଭାସେ ପରା/ପ୍ରେମିକ ଯେ ଯାର ସେ କି ତାହା ତୁଳେ କୋଟି ରୂପେ ଦିଏ ଧରା ! (ଚନ୍ଦ୍ରପତି) ।

ପ୍ରକୃତିରେ ଯତ୍ର ତତ୍ର ଏଇ ବିରାଟ ଆତ୍ମପ୍ରହାର ଗାନ । ସର୍ବତ୍ର କବିଙ୍କ ପ୍ରିୟ ସମାଗମର ଦୁର୍ବାର କାମନାଟି ପ୍ରକଟିତ । ତାସହ ପ୍ରେମର ଅନନ୍ତ ତତ୍ତ୍ୱଟି ବିଜଡ଼ିତ । ଗାଢ଼ ପ୍ରଣୟରେ ବିଯୋଗ ବିରହରେ ବି ପ୍ରେମର ପ୍ରତ୍ୟୟଟି ତୁଟେ ନାହିଁ । କବିଙ୍କ ହୃଦୟରେ ଏ ବିରହକୁ ମାନିନେବାର ପ୍ରଚଣ୍ଡ ସହ୍ୟଶକ୍ତି ଜାଗ୍ରତ । ହୃଦୟର ସହଜ ଅନୁଭୂତିରୁ ଏହାର ସଂଚାରଣ । କବି ଚେତନାରେ ଦୁଃଖ ଯେତେ ତୀବ୍ର, ବିରହ ଯେତେ ଦାରୁଣ, ତାର ପୂଜା ସଂଗୀତ ସେତେ ଦରଦ କରୁଣ ଓ ସାଧନା ସେତେ ବଜ୍ର କଠିନ । ଦୁଃଖକୁ ସମଗ୍ର ସତ୍ତାରେ ଭରି ଓ ତାକୁ ଅତିକ୍ରମ କରି ହିଁ କବିଚିତ୍ତ ପ୍ରେମର ବ୍ୟାପ୍ତିକୁ ପ୍ରସାରିତ । କୁନ୍ତଳାଙ୍କ ଭାବସତ୍ତା କ୍ଷଣିକ ମିଳନ ଓ ଚିର ବିରହର ଅଜସ୍ର ସଂଗୀତ ରଚନା କରିଥିଲେ ବି ତାଙ୍କ ହୃଦୟ-ରାଗୀଣୀର ଅବିଛିନ୍ନ ଲୟଟି ବିରହ ବିଷାଦର ଏକତାନ ବିଧୃତ । ବିଷାଦ ବେଦନାରୁ କୁନ୍ତଳାଙ୍କ ସମଗ୍ର ପ୍ରେମ ଉପଲବ୍ଧିର ଆରମ୍ଭ । ସେ ଉପଲବ୍ଧିରେ ବିରହର ଅତଳତାରେ ମିଳନ ସ୍ୱପ୍ନର ଆଶା ଓ ଆନନ୍ଦ ବି ଅଂଗୀଭୂତ । ମରଣାନ୍ତ ମୁହୂର୍ତ୍ତଟି ତ କେବଳ ପ୍ରିୟ ଦର୍ଶନର ! (ଶିଥିଳ କଳେବର ଜରା ପରଶି/ଜୀବନନାଡ଼ି ଯେବେ ଯିବଟି ଖସି/ଘନ ଅନ୍ଧାରେ ଆତ୍ମ କାନ୍ଦିବ ବସି/ ଓହ୍ଲାଇ ଆସିବୁ ତୁ ଜ୍ୟୋତି ବରଷି''-ପୂଜା ।

କୁନ୍ତଳାଙ୍କ ପ୍ରେମଗାନର ଗତିଛନ୍ଦଟି ସାମୁଦ୍ରିକ । ସମୁଦ୍ରର ଢେଉ ସମୁଦ୍ରରୁ ଉଠି କୂଳରେ ମିଳାଇ ଯିବା ପରି ତାଙ୍କ କବି ପ୍ରାଣରେ ସକଳ ସ୍ୱରାଳାପ ପ୍ରେମର ଅନନ୍ତତାରେ ମିଶିଯାଉଛି । କେଉଁଠି ସମୁଦାୟ ସମୁଦ୍ର ରୂପକୁ କେଉଁଠି ବା ଗୋଟିଏ ତରଂଗର ସ୍ପର୍ଶ ବିହ୍ୱଳତାକୁ ସେ ପ୍ରେମ

ଚେତନା ପ୍ରସରି ଯାଇଛି । କେତେବେଳେ ତାଙ୍କ ହୃଦୟ ତରଂଗ-ଯାତ କଂପିତ ବିହ୍ୱଳିତ ଓ କେତେବେଳେ ସାମୁଦ୍ରିକ ଉଚ୍ଛ୍ୱାସ-ଉତ୍କ୍ରାନ୍ତ । ତାଙ୍କ କାବ୍ୟଗାନର ପ୍ରେମାନୁଭବ ସଂପର୍କରେ ଏତିକି କୁହାଯାଇପାରେ ଯେ ମାନବ ହୃଦୟର ପ୍ରେମ ସାଧନାରେ ଇଷ୍ଟ ଲୌକିକ ବା ଅଲୌକିକ, ବ୍ୟକ୍ତି ବା ଈଶ୍ୱର, ପାର୍ଥିବ ବା ଅପାର୍ଥିବ-ଗୁରୁତ୍ୱପୂର୍ଣ୍ଣ ନୁହେଁ । ସେଠି ସ୍ୱୟଂ ପ୍ରେମହିଁ ଆରାଧ୍ୟ । ଈଶ୍ୱର ରୂପେ ତାଙ୍କୁ ହୃଦପ୍ରୀତିରେ ସମାର୍ଚ୍ଚନା କରିବାକୁ ହୁଏ, ତାଙ୍କର ପ୍ରୀତି-ଭାଜନ ହେବାକୁ ହୁଏ । ଶୁଦ୍ଧ ସମର୍ପଣଶୀଳ ପ୍ରେମର ସର୍ବୋଚ୍ଚ ସ୍ତରକୁ ଉଠିବାକୁ ହୁଏ । ସିଦ୍ଧି ଓ ସାଫଲ୍ୟର ପ୍ରସଂଗ ବାହାରେ କୁନ୍ତଳାଙ୍କ କବିସତ୍ତା ସେଇ ସାଧନାର ଅନୁବ୍ରତୀ । ବିଦଗ୍ଧ ଆଲୋଚକଙ୍କ ଭାଷାରେ "If love be mysticism then we have the keg to all mysticism withen ourselves" - ଫାଦର ଟରେଲ ।

ଅଧ୍ୟାପିକା, ଓଡ଼ିଆ ବିଭାଗ
ରେଭେନ୍ସା ମହାବିଦ୍ୟାଳୟ
କଟକ



# ନାରୀ ପ୍ରତିଭା ବିପ୍ଳବିଣୀ କୁନ୍ତଳା କୁମାରୀ

ଶାନ୍ତା ପଟ୍ଟନାୟକ

ଓଡ଼ିଆ ସାହିତ୍ୟରେ କବି ପ୍ରତିଭାର ମର୍ଯ୍ୟାଦା ଅଧୁନା ସମାଜରେ ବିଶେଷ କରି ସାହିତ୍ୟ କ୍ଷେତ୍ରରେ ଅନୁଧ୍ୟାନର ବିଷୟ ହୋଇଚି । ପୁରାତନ ଜୀର୍ଣ୍ଣ ପାଣ୍ଡୁଲିପି ଅବଲୁପ୍ତ ସାହିତ୍ୟ କୃତିର ପୁନରୁଦ୍ଧାର କାର୍ଯ୍ୟ ଚାଲିଛି । ବିଗତ ଛ'ବର୍ଷ ହେଲା ଲେଖିକା ସଂସଦ ଜନ୍ମଲାଭ କଲାପରେ ଅଗଣିତ ନାରୀ ଲେଖିକା ସାହିତ୍ୟାକାଶରେ ଉଦ୍‌ଭାସିତ ହେଲେଣି । ୧୮ଶହ ଶତାବ୍ଦୀରେ ପ୍ରଥମ ନାରୀ କବି ପୂଜ୍ୟା ମାଧବୀ ଦାସୀ ଭକ୍ତି ରସାତ୍ମକ କବିତା ରଚନା କରି ଜଗନ୍ନାଥ ମହାପ୍ରଭୁଙ୍କର ବନ୍ଦନା କରିଛନ୍ତି ।

ମହିଳା ମାନଙ୍କର ସର୍ବାଙ୍ଗୀନ ଉନ୍ନତି ପାଇଁ ସମାଜ ଓ ପରିବାରର ଏକାନ୍ତ ସହଯୋଗ ପ୍ରୟୋଜନ । ପୁରାତନ ଯୁଗରେ ନାରୀ ଶିକ୍ଷାର ପ୍ରସାର ନଥିଲା । ଖୁବ୍ ସିମୀତ ପରିବାରରେ ଧର୍ମ ଗ୍ରନ୍ଥ ପୁରାଣ ପାଠ ମାଧମରେ ଅଳ୍ପ ମହିଳା ଲେଖି ପଢ଼ି ଜାଣୁଥିଲେ ନଚେତ ଶ୍ରୁତି ମାଧମରେ ପୁରାଣ ଓ ଲୋକକଥା ସ୍ମରଣ ରଖି ଉତ୍ତରେ ପିଢ଼ୀକୁ ଶୁଣାଉଥିଲେ । ଶ୍ରୁତି ମାଧମରେ ସଂଗୃହୀତ ଲୋକ ଗୀତ ଏକଦା "ଜଣେ କରଣ ମହିଳା" ନାମରେ ପ୍ରକାଶିତ ହୋଇଥିଲା । ସ୍ୱ ନାମ ପ୍ରକାଶ କରିବାର ସାହସ ମହିଳାଙ୍କର ନଥିଲା । ବିଂଶ ଶତାବ୍ଦୀ ନାରୀ ମାନଙ୍କର ସର୍ବାଙ୍ଗୀନ ଉନ୍ନତି ପାଇଁ ସହାୟକ ହେଲା । ଶିକ୍ଷା ସଂସ୍କୃତି ସମାଲୋଚନା ସବୁ କ୍ଷେତ୍ରରେ ମହିଳାମାନେ ଅଂଶଗ୍ରହଣ କରିବାର ସୁଯୋଗ ପାଇଲେ ।

ସ୍ୱର୍ଗୀୟା କୁନ୍ତଳା କୁମାରୀ ଓଡ଼ିଶାର ନାରୀ ମାନଙ୍କର କର୍ଣ୍ଣଧାତ୍ରୀ ରୂପେ ଫେବୃୟାରୀ ଆଠ ତାରିଖ ୧୯୦୦ ଶତାବ୍ଦୀରେ ଗୋଟିଏ ଖ୍ରୀଷ୍ଟିୟ ପରିବାରରେ ଜନ୍ମଗ୍ରହଣ କରିଥିଲେ । କୁନ୍ତଳା କୁମାରୀଙ୍କର ବାପା ଦାନିଏଲ ସାବତ ଆଦର୍ଶ ଖ୍ରୀଷ୍ଟିଆନ ଜୀବନ ଯାପନ କରୁଥିଲେ । ତାଙ୍କର କନ୍ୟା କୁନ୍ତଳା ତାଙ୍କର ଆଉ ଦୁଇ ଭଉଣୀ ସରଳା ଓ ପ୍ରଫୁଲ୍ଲ । କୁନ୍ତଳାଙ୍କ ଭ୍ରାତା ନିଥନିୟଲ ସାବତ ଓ ଶାମୁଏଲ ସାବତ । ନିଥନିଅଲଙ୍କର ତିନିପୁତ୍ର ଓ ଦୁଇ କନ୍ୟା । ଜ୍ୟେଷ୍ଠ ଅବନି ମୋହନ ସାବତ ଉଚ୍ଚ ସରକାରୀ କର୍ମଚାରୀ ଅବସର ଗ୍ରହଣ କରିଛନ୍ତି । ୨ୟ ସୁନାମଧନ୍ୟ ଲେଖକ ଗୀତିକାର ହିମାଂଶୁ ଭୂଷଣ ସାବତ ଆକାଶ ବାଣୀ ଓ ଦୂରଦର୍ଶନରେ ନିଜର କାର୍ଯ୍ୟ ସମାପନ ପରେ ଅବସର ଗ୍ରହଣ କରି କଟକରେ ଅବସ୍ଥାପିତ, କନିଷ୍ଠ ପୁତ୍ର ମୃଗାଙ୍କ ମୋହନ ମଧ କଟକରେ ରହନ୍ତି । ଦୁଇ କନ୍ୟା ଚିତ୍ରା ଓ ଉତ୍ତରା ବିବାହିତା । ହିମାଂଶୁ ସାବତଙ୍କୁ ପିଉସୀଙ୍କ ଲେଖାର ପ୍ରଭାବ ଅନୁପ୍ରାଣିତ କରିଛି । ସେ ଜୀବନର ସାୟାହ୍ନରେ ମଧ ନିଜର ଲେଖନୀ ଚାଳନାରୁ ନିବୃତ ହୋଇ ନାହାଁନ୍ତି ।

କୁନ୍ତଳା କୁମାରୀ କଟକ ମେଡ଼ିକାଲ ସ୍କୁଲରୁ ସମ୍ମାନର ସହ ଉତ୍ତୀର୍ଣ୍ଣ ହେବାପରେ ଡ଼ାକ୍ତର ହୋଇ ଜନ ସେବାରେ ନିଜକୁ ନିୟୋଜିତ କରିଥିଲେ । ତାଙ୍କର ସାହିତ୍ୟ ପ୍ରତି ଗଭୀର ଅନୁରାଗ ଥିଲା । ନିଜର କର୍ମମୟ ଜୀବନ ମଧରୁ ସମୟ ବାହାର କରି ସେ ନ'ତୁଣ୍ଡୀ, ଭ୍ରାନ୍ତି, ରଘୁଅରକ୍ଷିତ, କାଳୀବୋହୂ ଆଦି ଗଦ୍ୟ ସାହିତ୍ୟ, ଓ ସ୍ଫୁଲିଙ୍ଗ, ଶେଫାଳୀ ପ୍ରତି, ଉଚ୍ଛ୍ୱାସ ଆଦି ଅତି ଉଚ୍ଚ କୋଟିର କବିତା ରଚନା କରିଛନ୍ତି ।

ତାଙ୍କର ସାହିତ୍ୟ ପାଇଁ ଅବଦାନ ଉତ୍ତର ପୀଢ଼ିକୁ ଉଦ୍‌ବୁଦ୍ଧ କରୁଚି । ସେ ଜଣେ ପ୍ରମୁଖ କଂଗ୍ରେସ କର୍ମୀ କୃଷ୍ଣପ୍ରସାଦ ଦାସଙ୍କୁ ବିବାହ କରିଥିଲେ । କୁନ୍ତଳା କୁମାରୀଙ୍କର ଦୁଇ କନ୍ୟା ଓ ଏକ ପୁତ୍ର କନ୍ୟା ସବିତା ଓ ପୁତ୍ର ଜଗମୋହନ (ପୋଷ୍ଟ ଅଫିସର କାମ କରୁଥିଲେ ) ଜୀବିତ । କୁନ୍ତଳା କୁମାରୀ ଖୁବ୍ କମ୍ ବୟସରେ ଇହଲିଳା ସମ୍ବରଣ କଲେ । ତାଙ୍କ ସ୍ୱାମୀ ଦ୍ୱିତୀୟ ବିବାହ କରିଥିଲେ । ମୁଁ କଲେଜରେ ପଢ଼ିଲାବେଳେ ତାଙ୍କ କନ୍ୟା ସ୍କୁଲରେ ପଢୁଥିଲା । ଅନେକ ଥର ଝିଅଟିଏ ଏକୁଟିଆ ଚାଲିଚାଲି ସ୍କୁଲକୁ ଯିବାର ଦେଖିଚି । ମୁଁ ସାଇକଲ୍‌ରେ ଯିବା ଆସିବା କରେ । ଦିନେ କୌତୂହଳ ବଶତଃ ଝିଅଟିସଂଗେ ଆଳାପ କଲି । ସେ କୁନ୍ତଳା କୁମାରୀଙ୍କ ଝିଅ ନା, ସବିତା ବୋଲି କହିଲା । ସାବତ ମା ତେଣୁ ଘର କାମ ସାରି ସେ ରେଭେନ୍ସା ବାଳିକା ସ୍କୁଲକୁ ଆସିଲା ବେଳକୁ ପ୍ରାୟ ପ୍ରତିଦିନ ଡେରି ହୋଇଯାଏ ।

ଦିନେ ତାଙ୍କ ଘରକୁ ଗଲି, ସୁତାହାଟ ମସ୍‌ଜିଦ ସାମ୍ନା ତିନିକୋଣିଆ ବଗିଚା ଛକକୁ ଆସିବା ରାସ୍ତାରେ ଗଳିରେ ଗୋଟାଏ ଚାଳ ଘରେ ସେମାନେ ରହୁଥିଲେ । ମୋର ଅପ୍ରତ୍ୟାଶିତ ଆଗମନ ସେମାନଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କଲା । ମୋର ପରିଚୟ ଦେଲି । ମୋ ବାପା କଟକର ବିଶିଷ୍ଟ ଡ଼ାକ୍ତର ଓ ଦନ୍ତ ଚିକିତ୍ସକ ତେଣୁ ସମସ୍ତେ ତାଙ୍କୁ ଜାଣନ୍ତି । ମୋର କିନ୍ତୁ ତରୁଣ ମନ ବିଦ୍ରୋହ କରି ଉଠିଥିଲା । ଏତେ ବଡ଼ ସୁନାମଧନ୍ୟା କବୟତ୍ରୀ ଲେଖିକାଙ୍କ କନ୍ୟା ଏପରି ଭାବେ ଅବହେଳିତ କାହିଁକି ?

ରେଭେନ୍‌ସା କଲେଜରେ ଓଡ଼ିଆ ସାହିତ୍ୟରେ ସ୍ନାତକୋତ୍ତର ଛାତ୍ରୀ । ମୁଁ କୁନ୍ତଳା କୁମାରୀଙ୍କ ଉପରେ ଗବେଷଣା କରିବାରେ ମନୋନିବେଶ କଲି । କନିକା ଲାଇବ୍ରେରୀ ଓ ଆସେମ୍‌ବ୍ଲି ଲାଇବ୍ରେରୀରେ ନିୟମିତ ଅଧ୍ୟୟନ କରି ବହୁ ତଥ୍ୟ ସଂଗ୍ରହ କରିଥିଲି । ଆଧୁନିକ ସାହିତ୍ୟରେ ବିଶେଷ କରି କୁନ୍ତଳା କୁମାରୀଙ୍କ ଉପରେ ଲେଖିବା ପାଇଁ ଆର୍ତ୍ତଅଜା (ସ୍ୱର୍ଗୀୟ ଆର୍ତ୍ତବଲ୍ଲଭ ମହାନ୍ତି)ଙ୍କ ନିର୍ଦ୍ଦେଶରେ ହିନ୍ଦି ନେଲି ତେଣୁ ମୋର ସଂଗୃହୀତ ଲେଖା ସହପାଠୀ ବଂଧୁ ମାନଙ୍କୁ ଦେଇଥିଲି ।

କୁନ୍ତଳା କୁମାରୀ ସୁତାହାଟରେ ଦ୍ୱିତଳ ପ୍ରସାଦ ''ଭାରତ ତପୋବନ''ରେ ରହୁଥିଲେ । ଅବଶ୍ୟ ସେ ଗୃହ ସେ ଦାନ କରି ଦେଇଛନ୍ତି । ସେଠି ରହିବା ସମୟରେ ସମସ୍ତଙ୍କର ସେ ଅତି ପରିଚିତ ଥିଲେ । ଏତେ ପରୋପକାରୀ, ଅମାୟିକ, ସ୍ନେହୀ ଦରଦୀ ମହିଳା ସମାଜରେ ବିରଳ ।

ସ୍ୱର୍ଗୀୟ କାଳିନ୍ଦିବାବୁ ସୁତାହାଟରେ 'ଭାରତ ତପୋବନରେ' ରହୁଥିଲେ ଓ ନନ୍ଦିନୀ ଆମ ସଂଗେ ବସ୍‌ରେ ରେଭେନ୍‌ସା ବାଳିକା ବିଦ୍ୟାଳୟକୁ ଯାଉଥିଲେ । ଆମେ ଭାବିଥିଲୁ ସେ ଘର ନନ୍ଦିନୀ ବାପାଙ୍କର

ସ୍ୱର୍ଗୀୟା କୁନ୍ତଳା କୁମାରୀ ସାବତଙ୍କ ରଚନା ଚିରନ୍ତନ ଓ ଶାଶ୍ୱତ । ଶହେ ବର୍ଷ ପରେ ମଧ୍ୟ ଏହା ଜୀବନ୍ତ ଓ ମର୍ମସ୍ପର୍ଶୀ ।

ତାଙ୍କର ଅଲିଭା ସ୍ମୃତି ବିଦଗ୍ଧ ପାଠକ ହୃଦ କନ୍ଦରରେ ଅମର ରହୁ । ଶତବାର୍ଷିକୀରେ ଭଗବାନଙ୍କ ଶ୍ରୀଚରଣରେ ଏକ ମାତ୍ର ପ୍ରାର୍ଥନା କୁନ୍ତଳାଙ୍କ ଆତ୍ମା ଚିରଂଜିବୀ ହେଉ ।

ବାଲିଘର, ଭୁବନେଶ୍ୱର - ୨
ଫୋନ- ୪୩୧୮୫୯, ୪୩୧୭୫୯



# ବିଶ୍ୱାସର ଦର୍ପଣରେ ସମୟର ମୁହଁ

ଡ଼ଃ. ସଂଘମିତ୍ରା ମିଶ୍ର

*''କବି କୁନ୍ତଳା କୁମାରୀ ଓଡ଼ିଶାରେ ଗର୍ବ ଓ ଗୌରବ । ବିଂଶ ଶତାବ୍ଦୀର ପ୍ରାକ୍‌କାଳରେ ଜନ୍ମ ଲାଭ କରିଥିବା ଏହି ପ୍ରତିଭା ଓଡ଼ିଆ ସାହିତ୍ୟକୁ ଯଥେଷ୍ଟ ମର୍ଯ୍ୟାଦାବନ୍ତ କରିପାରିଛନ୍ତି । ତାଙ୍କର ବ୍ୟକ୍ତିତ୍ୱ ଓ କୃତିତ୍ୱ ସେ ସମୟ ପାଇଁ କେବଳ ବିସ୍ମୟାକର ନଥିଲା; ଆଜି ବିଂଶ ଶତକର ଅନ୍ତିମ ପାଦରେ ବି ଆଶ୍ଚର୍ଯ୍ୟଜନକ ହୋଇ ରହିଛି । ତାଙ୍କର ସେହି ଅନମନୀୟ ସ୍ୱତନ୍ତ୍ର କବିସତ୍ତା ପ୍ରତି ଶ୍ରଦ୍ଧା ନିବେଦନ ଏହି କ୍ଷୁଦ୍ର ପ୍ରବନ୍ଧର ଉଦ୍ଦେଶ୍ୟ ।''*

ବାଲ୍ୟକାଳ :

୧୯୦୦ ଫେବୃୟାରୀ ୮ ତାରିଖରେ ମଧ୍ୟପ୍ରଦେଶର ବସ୍ତର ଷ୍ଟେଟ୍‌ର ଜଗଦଳପୁରରେ କୁନ୍ତଳା ଜନ୍ମଗ୍ରହଣ କରିଥିଲେ । ତାଙ୍କର ଜେଜେ ବାପା ପରିବା ବ୍ୟବସାୟୀ ଶ୍ୟାମରନ୍ ଅନିଚ୍ଛା ସତ୍ତ୍ୱେ ଦୁର୍ବନ ବିଧିରେ ଖ୍ରୀଷ୍ଟିୟାନ୍ ଧର୍ମ ଗ୍ରହଣ କରିଥିଲେ । ଶ୍ୟାମରନ୍‌ଙ୍କ ପୈତୃକ ଗୃହଥିଲା ପୁରୀ ଜିଲ୍ଲା କୁଣ୍ଡେଇ ବେଣ୍ଟସାହି । ପାଦ୍ରୀମାନେ ଶ୍ୟାମରନ୍‌ଙ୍କ ବିବାହ ସାଧବୀ ନାମ୍ନୀ କନ୍ୟାଙ୍କ ସହିତ କରାଇଥିଲେ । ଯାହାଙ୍କ ପିତା ପୂର୍ବରୁ ଖ୍ରୀଷ୍ଟିୟାନ୍ ହୋଇ ସାରିଥିଲେ । କୁନ୍ତଳାଙ୍କ ପିତା ଦାନିୟେଲ୍ ସାବତ୍ ଏହି ଶ୍ୟାମରନ୍ ଓ ସାଧବୀଙ୍କ ସନ୍ତାନ । ଦାନିୟେଲ୍ ସାବତ୍ 'ଏଣ୍ଟ୍ରାନ୍‌ସ' ପାଶ୍ କରିବା ପରେ ଡ଼ାକ୍ତରୀ ପାଠ ପଢ଼ିଥିଲେ ଓ ଜଗଦଳପୁରରେ ଚାକିରୀ କରୁଥିଲେ । ତାଙ୍କର ବିବାହ ହୋଇଥିଲା ମନିକାଙ୍କ ସହିତ ଯେ କି ଖ୍ରୀଷ୍ଟିୟାନ୍ ପରିବାରର କନ୍ୟା ଥିଲେ । କୁନ୍ତଳାଙ୍କ ପିତାଙ୍କର କୁନ୍ତଳା, ସରଳା, ପ୍ରଫୁଲ୍ଲା ନାମ୍ନୀ ତିନିକନ୍ୟା ଓ ସାମୁଏଲ୍, ନିଥାନିୟେଲ୍ ନାମକ ଦୁଇ ପୁତ୍ର ସନ୍ତାନ ଜାତ ହୋଇଥିଲେ । ସେମାନଙ୍କର ବାଲ୍ୟକାଳ ବର୍ମାରେ ଅତିବାହିତ ହୋଇଥିଲା ।

ବ୍ୟକ୍ତିତ୍ୱ :

ହିନ୍ଦୀରେ ପହିଲି କଥା କହିବାକୁ ଆରମ୍ଭ କରିଥିବା କୁନ୍ତଳା ୧୩ ବର୍ଷ ପର୍ଯ୍ୟନ୍ତ ଓଡ଼ିଆ ଭାଷାର ସଂସ୍ପର୍ଶରେ ଆସି ନଥିଲେ । କିନ୍ତୁ ବର୍ମୀୟ ମହିଳାଙ୍କ ଦୃଢ଼ତା ତାଙ୍କୁ ବହୁ ଭାବରେ ଅନୁପ୍ରାଣିତ କରିଥିଲା । ସେ ଛୋଟ ଛୋଟ ଅବିଚାରକୁ ମଧ୍ୟ ସହ୍ୟ କରିପାରୁ ନଥିଲେ ଓ ଦୃଢ଼ଭାବରେ ନିଜର ମତପ୍ରକାଶ କରୁଥିଲେ । ସେ ବେଶି ସମୟ ନିର୍ଜନରେ ଏକାକୀ ବସିବାକୁ ଭଲ ପାଉଥିଲେ । ଯୀଶୁଙ୍କ ଭଜନଗୁଡ଼ିକ ସେ ସ୍ୱରକରି ଗାନ କରୁଥିଲେ ଓ ସମସ୍ତଙ୍କୁ ମୁଗ୍ଧ କରିପାରୁଥିଲେ । ସ୍ୱଭାବରେ ସେ ଧୀର ଓ ନମ୍ର ଥିଲେ ହେଁ ଥିଲେ ନିର୍ଭୀକ ଓ ସ୍ପଷ୍ଟବାଦୀ ।

ଶିକ୍ଷା :

ପିତାଙ୍କଠାରୁ ଇଂରାଜୀ ଓ ମାତାଙ୍କଠାରୁ ଓଡ଼ିଆ ଶିକ୍ଷା କରିଥିବା କୁନ୍ତଳା ୧୯୧୫ରେ ନିଜ ଭାଇ ଭଉଣୀ ଓ ମାଆଙ୍କ ସହିତ ଖୋର୍ଦ୍ଧା ଚାଲି ଆସିଥିଲେ । ପିତା ଦାନିଏଲ୍ ମନିକାଙ୍କ ସାନ ଭଉଣୀଙ୍କୁ ବିବାହ କରିବା ପରେ କୁନ୍ତଳାଙ୍କ ଜନନୀ ଏତାଦୃଶ ପଦକ୍ଷେପ ନେଇଥିଲେ । ସେ ହିନ୍ଦୁ

ବାଳିକାମାନଙ୍କ ସଂସ୍ପର୍ଶରେ ଆସି ତାଙ୍କର ସାରଲ୍ୟ ଓ ନମ୍ରତା ଦ୍ୱାରା ପ୍ରଭାବିତ ହୋଇଥିଲେ। ୧୯୧୭ରେ କଟକର କେଶରପୁରରେ ରହୁଥିବା ଜଣେ ଆତ୍ମୀୟଙ୍କ ଘରେ ରହି ସେ ରେଭେନ୍‌ସା ଗାର୍ଲସ୍କୁଲରେ ପାଠ ପଢ଼ିଲେ। ୧୯୧୮ରେ ମେଡ଼ିକାଲ ସ୍କୁଲରେ ପଢ଼ିବା ପାଇଁ ରେଭେନ୍‌ସା ଗାର୍ଲ ସ୍କୁଲରୁ ବିଦାୟ ନେବାଦିନ ସେ ସ୍ୱରଚିତ କବିତା ଗାନ କରି ସମସ୍ତଙ୍କୁ ଚମକୃତ କରିଥିଲେ। ୧୯୨୧ରେ ସେ ବିହାର - ଓଡ଼ିଶା ମେଡ଼ିକାଲ ବୋର୍ଡ଼ ପରୀକ୍ଷାରେ ସର୍ବାଧିକ ନମ୍ବର ରଖି ସ୍ୱର୍ଣ୍ଣ ପଦକ ବିଜୟିନୀ ହୋଇଥିଲେ। ଡ଼ାକ୍ତରୀ ପେଶା ପାଇଁ ସେ ଦିଲ୍ଲୀରେ ମଧ୍ୟ ଅବସ୍ଥାନ କରିଥିଲେ। ତତ୍‌କାଳୀନ ବହୁ ବିଶିଷ୍ଟ ବ୍ୟକ୍ତିମାନଙ୍କ ସହିତ ତାଙ୍କର ପରିଚୟ ଥିଲା ଓ ଡ଼ାକ୍ତର ଭାବରେ ତାଙ୍କର ବହୁ ସୁନାମ ଥିଲା। ନିଜ ଚେଷ୍ଟାରେ ସେ ଏକାଧିକ ଭାଷା ଶିକ୍ଷା କରିଥିଲେ। ତାଙ୍କର ନିର୍ଭୁଲ ଇଂରାଜୀ ଉଚ୍ଚାରଣ ସମସ୍ତଙ୍କୁ ଚକିତ କରିଥିଲା।

ବ୍ୟକ୍ତିଜୀବନ ଓ ବିବାହ :

କୌଣସି ସ୍ରଷ୍ଟାର ବ୍ୟକ୍ତିଗତ ଜୀବନ ବିଷୟରେ ପାଠକୀୟ ଆଗ୍ରହ ରହିବା ସ୍ୱାଭାବିକ। ଯଦି ସେ ସ୍ରଷ୍ଟା ନାରୀ ହୋଇଥାଏ, ତେବେ କୁତୂହଳର ମାତ୍ରା ଅଧିକ ହୋଇଥାଏ। ଏହି ଦୃଷ୍ଟିରୁ କୁନ୍ତଳାଙ୍କ ବ୍ୟକ୍ତିଗତ ଜୀବନ ତାଙ୍କର ସାହିତ୍ୟିକ ଜୀବନର ପରିପୂରକ ପୁଣି ପରିପନ୍ଥୀ - କଟକ ମେଡ଼ିକାଲ ସ୍କୁଲ୍‌ର ଆନାଟୋମି ଓ ଫିଜିଓଲୋଜି ଡ଼ିମନ୍‌ଷ୍ଟ୍ରେଟ୍‌ର ଶ୍ରୀଯୁକ୍ତ କୈଳାସ ଚନ୍ଦ୍ର ରାଓ ଥିଲେ ତାଙ୍କର ପଥ ପ୍ରଦର୍ଶକ। କୁନ୍ତଳାଙ୍କ ସାହିତ୍ୟିକ ଜୀବନ ଶ୍ରୀଯୁକ୍ତ ରାଓଙ୍କ ତତ୍ତ୍ୱାବଧାନରେ ହିଁ ପୁଷ୍ଟ ହୋଇଥିଲା। ୧୯୨୧ ରୁ ୧୯୨୮ ପର୍ଯ୍ୟନ୍ତ କୁନ୍ତଳାଙ୍କ ସାହିତ୍ୟ ସୃଷ୍ଟିକୁ ପ୍ରେରଣା ଦେବା ଓ ସେସବୁର ମୁଦ୍ରଣ ଦିଗରେ ସାହାଯ୍ୟ କରିବାରେ ସେ ଅକୁଣ୍ଠ ସାହାଯ୍ୟ କରିଥିଲେ। କିନ୍ତୁ ବିବାହିତ ହିନ୍ଦୁ ଯୁବକ କୈଳାସଚନ୍ଦ୍ରଙ୍କୁ ସ୍ୱାମୀ ରୂପରେ ପାଇବା ପାଇଁ ଚେଷ୍ଟାକରି କୁନ୍ତଳା ଅସଫଳ ହୋଇଥିଲେ। ୧୯୨୮ ଅଗଷ୍ଟ ୯ ତାରିଖରେ ସେ କୃଷ୍ଣ ପ୍ରସାଦ ବ୍ରହ୍ମଚାରୀ ନାମକ ଯୁବକଙ୍କୁ ବିବାହ କରିଥିଲେ; ମାତ୍ର ବ୍ୟକ୍ତିତ୍ୱମୟୀ କୁନ୍ତଳାଙ୍କ ବ୍ୟକ୍ତିତ୍ୱର ଭୂୟୋବିକାଶ ଏହାପରେ ବାଧାପ୍ରାପ୍ତ ହୋଇଥିଲା। କୁନ୍ତଳାଙ୍କୁ ସାଧାରଣ ନାରୀ ଭଳି ବ୍ୟବହାର କରୁଥିବା ସ୍ୱାମୀ ତାଙ୍କର ବୈଶିଷ୍ଟ୍ୟ ଆକଳନ କରିପାରି ନଥିଲେ। ଫଳରେ ସେମାନଙ୍କର ବୈବାହିକ ଜୀବନ ସୁଖମୟ ହୋଇପାରି ନଥିଲା। ତେବେ ସେ ତିନୋଟି ସନ୍ତାନର ଜନନୀ ହୋଇଥିଲେ। ୧୯୩୮ ଅଗଷ୍ଟ ୨୩ ତାରିଖରେ ତାଙ୍କର ମହାପ୍ରୟାଣ ହୋଇଥିଲା। ସକଳ ଦୁଃଖ ଶୋକକୁ ସେ ମଙ୍ଗଳମୟ ପ୍ରଭୁଙ୍କର ଆଶୀର୍ବାଦ ଭାବି ସହ୍ୟ କରିଯାଉଥିଲେ। ଅନେକ ଭାବପ୍ରବଣତା ନେଇ ବଞ୍ଚୁଥିବା ଏକ ଚିକିତ୍ସିକା ନିଜର ମନୋମତ ପରିବେଶ ନପାଇ ବେଶ୍ ଭାଙ୍ଗିପଡ଼ିଥିଲେ। ଯାହା ତାଙ୍କର ରଚନାବଳିରେ ବହୁଭାବେ ପ୍ରତିବିମ୍ବିତ ହୋଇଛି। ଜୀବନର ସକଳ ଦୁର୍ବିପାକକୁ ସେ ଈଶ୍ୱରାର୍ପଣ କରି ସନ୍ତୋଷ ଲାଭ କରିଥିଲେ ଓ ହଳାହଳ ପାନ କରି ଜାତି ଉଦ୍ଦେଶ୍ୟରେ ଅମୃତ ଦାନ କରିଥିଲେ।

ସମକାଳୀନ ସାହିତ୍ୟିକ ପରିବେଶ :

କୁନ୍ତଳାଙ୍କ ସମୟରେ ସାହିତ୍ୟିକ ପାଣିପାଗରେ ଦେଶାତ୍ମବୋଧ ଓ ପଲ୍ଲୀଚେତନାର ଏକତ୍ର ସମାବେଶ ପରିଦୃଷ୍ଟ ହେଉଥିଲା। ଏକ ପକ୍ଷରେ ଭାରତର ସ୍ୱାଧୀନତା ଆନ୍ଦୋଳନରେ ଓଡ଼ିଶାର

ଯୋଗଦାନ ସଂପର୍କରେ ଜନ-ମାନସରେ ଆଗ୍ରହ ସୃଷ୍ଟି ପାଇଁ ଗୋପବନ୍ଧୁ, ଗୋଦାବରୀଶ, ପଦ୍ମଚରଣ, କାଳିନ୍ଦୀଚରଣ ପ୍ରଭୃତି ଯଥେଷ୍ଟ ପ୍ରୟାସ କରିଥିଲେ । ମାନସିଂହଙ୍କ କବିତାର ରୋମାଣ୍ଟିକ୍ ଅବବୋଧ, ପଲ୍ଲୀପ୍ରୀତି, ବୈକୁଣ୍ଠନାଥଙ୍କର ମାନବବାଦୀ ଉର୍ଦ୍ଧ୍ୱଗାମୀ ଚିନ୍ତାଧାରା, ଗଡ଼ନାୟକଙ୍କର ଛାନ୍ଦସିକତା ପ୍ରଭୃତି ସେ ସମୟର ସାହିତ୍ୟିକ ପାଣିପାଗକୁ ଉଜ୍ଜୀବିତ କରି ରଖିଥିଲା । ପୂର୍ବସୂରୀ ରାଧାନାଥ, ମଧୁସୂଦନ ଓ ବିଶେଷ ଭାବରେ ନନ୍ଦକିଶୋର ଥିଲେ ତାଙ୍କର ଆଦର୍ଶ ।

ଫକୀରମୋହନ ଗଦ୍ୟ ସାହିତ୍ୟରେ ଯେଉଁ ନୂତନ କ୍ରାନ୍ତି ଆଣିଥିଲେ, ତାହା କୁନ୍ତଳାଙ୍କୁ ବହୁ ଭାବରେ ପ୍ରଭାବିତ କରିଥିଲା । ଓଡ଼ିଆଣୀ ତୁଣ୍ଡର ଭାଷାକୁ ସାହିତ୍ୟିକ ମର୍ଯ୍ୟାଦା ଦେଇ ଫକୀରମୋହନ ଚମ୍ପା, ନାକଫୋଡ଼ିଆ ମାଆ, ଚିତ୍ରକଳାଙ୍କୁ ସାହିତ୍ୟ ଜଗତରେ ଅନ୍ତର୍ଭୁକ୍ତ କରିଥିଲେ । ଗୋପବନ୍ଧୁ ଗୋଦାବରୀଶ ପ୍ରଭୃତିଙ୍କ ସହଜ ତଥା ଭାବଗର୍ଭକ ଗଦ୍ୟରଚନା କୁନ୍ତଳା-କୁମାରୀଙ୍କୁ ଗଦ୍ୟସାହିତ୍ୟ ରଚନା ପାଇଁ ଉତ୍ସାହିତ କରିଥିଲା ।

ସେହି ସମୟରେ ବ୍ରାହ୍ମ ସମାଜ, ଆର୍ଯ୍ୟ ସମାଜ, ରାମକୃଷ୍ଣ ମିଶନ, ଥିଓସୋଫିକାଲ୍ ସୋସାଇଟି ପ୍ରଭୃତି ଧର୍ମୀୟ ବାତାବରଣକୁ ପ୍ରଭାବିତ କରିଥିଲା ଓ ଫଳସ୍ୱରୂପ ଏକ ଉଦାର ମାନବବାଦୀ ଦୃଷ୍ଟିକୋଣ କ୍ରମେ ପ୍ରସାରିତ ହେଉଥିଲା । ଉତ୍କଳ ସାହିତ୍ୟ, ସତ୍ୟବାଦୀ, ମୁକୁର ପ୍ରଭୃତି ପତ୍ରପତ୍ରିକା ମଧ୍ୟ ଏକ ସାଂସ୍କୃତିକ ପରିବେଶ ସୃଷ୍ଟି କରିବାପାଇଁ ଅନେକ ନୂତନ ଲେଖକ ଲେଖିକା ସୃଷ୍ଟି କରିଥିଲେ । ୧୯୨୪ ମସିହାରେ କଲିକତା ବିଶ୍ୱବିଦ୍ୟାଳୟ ତରଫରୁ "Typical Selections from Oriya Literature" ମୁଦ୍ରିତ ହୋଇଥିଲା । ଏହାର ୩ୟ ଖଣ୍ଡରେ ରାଧାନାଥ, ଫକୀରମୋହନ, ଗଙ୍ଗାଧର, ନନ୍ଦକିଶୋର, ଗୋବିନ୍ଦ ରଥ, ଚିନ୍ତାମଣି ମହାନ୍ତି ଓ ନୀଳକଣ୍ଠ ଦାସଙ୍କ କୃତି ସହିତ କୁନ୍ତଳାଙ୍କ କବିତା ମୁଦ୍ରିତ ହୋଇଥିଲା ।

ସାହିତ୍ୟକୃତି (ଉପନ୍ୟାସ) :

କୁନ୍ତଳାକୁମାରୀ ଗଦ୍ୟ ଓ ପଦ୍ୟ ସାହିତ୍ୟରେ ତାଙ୍କର ପାରଦର୍ଶିତା ଦେଖାଇଯାଇଛନ୍ତି । କବିତାରେ ଅଞ୍ଜଳି (୧୯୨୨), ଉଚ୍ଛ୍ୱାସ (୧୯୨୩), ଅର୍ଚ୍ଚନା (୧୯୨୭), ସ୍ଫୁଲିଙ୍ଗ (୧୯୨୯), ଆହ୍ୱାନ (୧୯୩୦), ପ୍ରେମ ଚିନ୍ତାମଣି (୧୯୩୦), ଓଡ଼ିଆଙ୍କ କାନ୍ଦଣା (୧୯୩୬), ଗଡ଼ଜାତ କୃଷକ (୧୯୩୯) ଓ ମଣିକାଞ୍ଚନ ହେଉଛି ତାଙ୍କ ସୃଷ୍ଟି । ଉପନ୍ୟାସଗୁଡ଼ିକ ହେଉଛି-ଭ୍ରାନ୍ତି (୧୯୨୩), ନଅତୁଣ୍ଡୀ (୧୯୨୪), କାଳୀବୋହୂ, ପରଶମଣି ଓ ରଘୁ ଅରକ୍ଷିତ । 'ଚିତ୍ରପଟ' ତାଙ୍କର ଅସଂପୂର୍ଣ୍ଣ ଉପନ୍ୟାସ । ଆକୃତି ଦୃଷ୍ଟିରୁ 'ରଘୁ ଅରକ୍ଷିତ' ଦୀର୍ଘ ଓ ଅନ୍ୟ ଚାରିଟି ଉପନ୍ୟାସ କ୍ଷୁଦ୍ରକାୟ ।

ଭ୍ରାନ୍ତିର ଶେଫାଳିକା, ନଅତୁଣ୍ଡୀର ଗେହ୍ଲୀ ଓ ରତନ. କାଳୀବୋହୂର ଲକ୍ଷ୍ମୀ, ପରଶମଣିର ଲଳିତା, ରଘୁଅରକ୍ଷିତର ସୀତା,ସରସ୍ୱତୀ ପ୍ରଭୃତିରେ କୁନ୍ତଳାକୁମାରୀଙ୍କ ବ୍ୟକ୍ତିତ୍ୱ ବିକଶିତ । ଶେଫାଳିକା ସରଳା ନିଷ୍ପାପ କିଶୋରୀ ମାତ୍ର ଗେହ୍ଲୀ ଓ ରତନୀ ନିଜସ୍ୱ ବ୍ୟକ୍ତିତ୍ୱରେ ଉଜ୍ଜ୍ୱଳ । ସେମାନେ ପ୍ରତିବାଦ କରିଛନ୍ତି ପରିବେଶ ବିରୁଦ୍ଧରେ ସଂଗ୍ରାମ କରିଛନ୍ତି, ଲଳିତାର ବୈଧବ୍ୟରେ ପାଠକର ପ୍ରାଣ ଅଶ୍ରୁସିକ୍ତ ହୁଏ । ସୀତାର ଚାତୁର୍ଯ୍ୟ ରଘୁଅରକ୍ଷିତରେ ମୂଳ ପ୍ରେରଣା ସ୍ରୋତ ପାଲଟିଯାଏ । ତତ୍କାଳୀନ ସମାଜରେ

ଯୌତୁକ, ଅସ୍ପୃଶ୍ୟତା, ଧନୀଦରିଦ୍ର, ଧର୍ମାନ୍ତର ଗ୍ରହଣର ସମସ୍ୟା-ସର୍ବୋପରି ନାରୀକୁ ନେଇ ଯେତେସବୁ ସମସ୍ୟା ଥିଲା, କୁନ୍ତଳା ସେସବୁ ବିରୁଦ୍ଧରେ ବିଦ୍ରୋହ କରିଛନ୍ତି । ସତ୍ୟାଗ୍ରହ, ହରତାଳ, ଖଦୀପିନ୍ଧା, ଦେଶପାଇଁ ନିଜର ପିନ୍ଧା ଗହଣା ପର୍ଯ୍ୟନ୍ତ ଦାନ କରିବାର ଦମ୍ଭ ଓ ଆଗ୍ରହ ତାଙ୍କର ନାରୀ ଚିତ୍ରମାନେ ଦେଖାଇ ଯାଇଛନ୍ତି । କେବଳ ସେତିକି ନୁହେଁ; ଖ୍ରୀଷ୍ଟିଆନ୍ ପରିବାରର ଉଦାରତା, ବୁଝାମଣା ଓ ଆଧୁନିକ ମାନସିକତାକୁ ସେ ଯଥେଷ୍ଟ ପ୍ରଶଂସା କରିଛନ୍ତି । ତାଙ୍କ ଉପନ୍ୟାସର ପାରମ୍ପରିକ ବୟସ୍କ ଚରିତ୍ରମାନେ ଉତ୍ତର ଜୀବନରେ ସମାଜ ସେବା ପାଇଁ ଆଗ୍ରହୀ ମଧ୍ୟ ହୋଇଛନ୍ତି । ଏହା ତତ୍କାଳୀନ ସାମାଜିକ ସ୍ଥିତିର ସୂଚନା ଦେଇଥାଏ । କେଉଁଠି ସେମାନେ ଅମ୍ବିକା ଆଶ୍ରମ ଗଢ଼ିଛନ୍ତି, କେଉଁଠି ଗଢ଼ିଛନ୍ତି ଶାନ୍ତିକୁଟୀର (କାଳୀବୋହୂ), କେଉଁଠି ବା କଲ୍ୟାଣୀଭବନ ତିଆରି ହୋଇଛି ଅନାଥାମାନଙ୍କ ସେବାଯତ୍ନ ପାଇଁ । ସେମାନେ ସୂତା କାଟିବେ, କାର୍ପେଟ୍ ବୁଣିବେ, ଚିତ୍ର ଆଙ୍କିବେ, କେବଳ କପାଳକୁ ନ ନିନ୍ଦି ଜୀବନକୁ ଭିନ୍ନ ମାର୍ଗରେ ସମାଜ ଉପଯୋଗୀ କରି ଗଢ଼ିବାର ସୁଯୋଗ ପାଇବେ ।

ତାଙ୍କ ଉପନ୍ୟାସମାନଙ୍କରେ ନାରୀର ଯେଉଁ ମହନୀୟ ମାତୃମୂର୍ତ୍ତି ଚିତ୍ରିତ ହୋଇଛି, ତାହା ଅନନ୍ୟ ସାଧାରଣ । ଅନାଥ ବାଳକ ତଥା ସଂପର୍କୀୟମାନଙ୍କ ପ୍ରତି ଏହି ବାତ୍ସଲ୍ୟ ଶତଧାରରେ ଝରିଯାଇଛି । ତାହା କୌଣସି ସାମାଜିକ ବିଧି ନିଷେଧକୁ ଭ୍ରୂକ୍ଷେପ କରି ନାହିଁ । 'ରଘୁଅରକ୍ଷିତ' ଉପନ୍ୟାସରେ ଜମିଦାର ଚନ୍ଦ୍ରଶେଖର ଚୌଧୁରୀଙ୍କ ପତ୍ନୀ ସରସ୍ୱତୀ ଏହାର ଏକ ପ୍ରକୃଷ୍ଟ ଉଦାହରଣ । ଗାଳି ଦେବା ଓ ପିଠି ଆଉଁସି ସାନ୍ତ୍ୱନା ଦେବାରେ ସେ ଥିଲେ ଅଦ୍ୱିତୀୟା । ଗାଈ ରଖିବା, କ୍ଷୀର ବିକ୍ରୀ କରିବା, ପୋଖରୀରେ ମାଛଚାଷ କରିବା, ବଳକା ଟଙ୍କା କରଜ ଲଗାଇବା, ଆମ୍ବ କରଞ୍ଜ ପୋଲାଙ୍ଗ ତୋଟା ନିଲାମ ଧରିବା ଆଦି ମାମଲତକାର ସୁଲଭ କର୍ମ ସେ ବଡ଼ କୌଶଳରେ କରିପାରୁଥିଲେ । ତେଣୁ ତାଙ୍କ ବ୍ୟକ୍ତିତ୍ୱ ମଧ୍ୟରେ ପାରମ୍ପରିକ ନାରୀର ପ୍ରତିମୂର୍ତ୍ତି ସହିତ ଆଧୁନିକ ନାରୀର ଜୀବନଦୃଷ୍ଟି ସମନ୍ୱିତ ହୋଇଯାଇଥିଲା । ବାଳୁତ ବିଧବାମାନଙ୍କର କଷ୍ଟ ତାଙ୍କୁ ବ୍ୟଥିତ କରିଛି । 'ରଘୁ ଅରକ୍ଷିତ' ଉପନ୍ୟାସର ପିଢେଇ ନାନୀ ଏହାର ଦୃଷ୍ଟାନ୍ତ । 'ନଅତୁଣ୍ଡୀ' ଉପନ୍ୟାସରେ ଜମିଦାର କୃଷ୍ଣଚନ୍ଦ୍ରଙ୍କର ଆଗ୍ରହ ଫଳରେ ତାଙ୍କ ପତ୍ନୀ ଉମାସୁନ୍ଦରୀ ପାଠ ପଢ଼ିଛନ୍ତି । ବୃଦ୍ଧଙ୍କର ତରୁଣୀ କନ୍ୟା ବିବାହ ଓ ତଦ୍‌ଜନିତ ପରିଣତି ସଂପର୍କରେ ମଧ୍ୟ କୁନ୍ତଳାଙ୍କ 'ରଘୁ ଅରକ୍ଷିତ' ଉପନ୍ୟାସରେ ବର୍ଣ୍ଣନା କରାଯାଇଛି । ଜମିଦାର କନ୍ୟା ଦଶ ବର୍ଷ ବୟସ୍କା କିଶୋରୀ ସୀତା ବାଷଠି ବର୍ଷର ବୃଦ୍ଧ ବୃନ୍ଦାବନଙ୍କୁ ବିବାହ କରିଛି । ଏହି କନ୍ୟାକୁ ପୁଅପାଇଁ ପସନ୍ଦ କରବାକୁ ଯାଇ ବୃନ୍ଦାବନ ଦି'ଗୁଣ ପଣ ଦେଇ ନିଜପାଇଁ ସ୍ତ୍ରୀ କରି ଆଣିଛନ୍ତି, ଜମିଦାର କନ୍ୟା ଆଜନ୍ମ ସୁଖ ପାଳିତା କନ୍ୟାଙ୍କର ଏତାଦୃଶ ଦୁରାବସ୍ଥା କଥା ଚିନ୍ତା କଲେ ତତ୍କାଳିନ ସାମାଜିକ ପରମ୍ପରାରେ ନାରୀର ଦୁର୍ଦ୍ଦଶା କଥା ଭାବି ହୁଏ ନାହିଁ । କାଳୀବୋହୂର ସରସ୍ୱତୀ ଓ ସତ୍ୟବତୀ ନାରୀ-ସମାଜର ସର୍ବାଙ୍ଗୀନ ଉନ୍ନତି ପାଇଁ ଯଥାସାଧ୍ୟ ପ୍ରୟାସ କରିଛନ୍ତି । ନଅତୁଣ୍ଡୀର ମହାପାତ୍ର ଭାରିଯା କିନ୍ତୁ ସଂସ୍କାରକୁ ଗ୍ରହଣ କରି ପାରିନାହାଁନ୍ତି । ସେ ଖଦୀବସ୍ତ୍ରକୁ ସମାଲୋଚନା କରିଛନ୍ତି । ତାଙ୍କ ଚରିତ୍ର ସଂସାରରେ ମୁଖରା, ଉଦଣ୍ଡୀ ଚରିତ୍ରମାନେ ମଧ୍ୟ ନିଜର ସ୍ୱାତନ୍ତ୍ର୍ୟ ରକ୍ଷା କରି ସମାଜ ପାଇଁ ପ୍ରଶ୍ନବାଚୀ ପାଲଟି ଯାଇଛନ୍ତି ।

ସାହିତ୍ୟକୃତି (କବିତା) :

କୁନ୍ତଳାଙ୍କ କବିତାରେ ପଲ୍ଲୀପ୍ରାଣତା, ଅତୀତ ପ୍ରୀତି, ଦେଶପ୍ରୀତି ଈଶ୍ୱର ତଥା ସମାଜପ୍ରତି ଅଭିମାନ, ନାରୀ ଜୀବନର ଦୁର୍ଦ୍ଦଶା ସର୍ବୋପରି ଈଶ୍ୱର ବିଶ୍ୱାସ ପରିଦୃଷ୍ଟ ହୋଇଥାଏ । ପଲ୍ଲୀର ସୌନ୍ଦର୍ଯ୍ୟରେ ସେ ଯେତିକି ମୁଗ୍‌ଧ, ପଲ୍ଲୀର ଦୁଃସ୍ଥିତି ଦେଖି ସେ ସେତିକି ମ୍ରିୟମାଣ; ସ୍ଫୁଲିଙ୍ଗର 'ପୁରୁଣା ଓଡ଼ିଆ' କବିତାରେ -

''ଭଗ୍ନ କୁଟୀରେ ହେ କୃଷକ ଭାଇ
ଅର୍ଦ୍ଧମୃତ ତୋ'ର ପରିବାର
ନିତି କ୍ଲାନ୍ତି ଖଟଣି ସାର ତୋ'
ନମିଳଇ ପୂର୍ଣ୍ଣ ଆହାର,
X X X
ଦୀର୍ଘ ହତାଶ ନିଶ୍ୱାସ
ତୋ'ର ଆଉ ନ ମିଶିବ ମାଟିରେ
ଦେଢ଼କୋଟି ଆଜି ଉଠିବେ ଓଡ଼ିଆ
ଜଡ଼ତାର ମୋହ କାଟିରେ ।''

ପଲ୍ଲୀରେ ଯୁବକ ମୋଟିଆ ଓ ବେଠିଆ ହେବାକୁ ଘରଛାଡ଼େ । ସ୍ୱଦେଶ ଛାଡ଼ି ବିଦେଶରେ ପର ଆଗରେ ହାତ ପତାଏ । ବନ୍ୟା, ବାତ୍ୟା, ବିଧ୍ୱସ୍ତ ଓଡ଼ିଶା ମାଟି ମାଆର କାନ୍ଦଣା ଶୁଣିବାକୁ କେହି ନଥାଏ । ତା' ଘରର ଶିରୀ ଅର୍ଥାତ୍ ତା'ର ମା' ଭଉଣୀ ବା ସ୍ତ୍ରୀ ଧାନ କୁଟନ୍ତି । ଚକି ପେଷନ୍ତି ଓ ଗୁହାଳ ସଫା କରି ବଞ୍ଚି ରହିବାର ପ୍ରୟାସ କରିଥାଆନ୍ତି । 'ସ୍ଫୁଲିଙ୍ଗ'ର ସମସ୍ତ କବିତାରେ ଦେଶ ପ୍ରେମର ସ୍ୱର ଶୁଣାଯାଏ । ଭାରତ ରମଣୀ, ନାରୀଶକ୍ତି ସୌଭାଗ୍ୟ ଆହ୍ୱାନ ଆଦି କବିତାରେ ସେ ଦେଶ ପ୍ରେମର ଉଦାର ସ୍ୱର ଶୁଣାଇଛନ୍ତି । ପୁରୁଷ ଭଳି ନାରୀ ମଧ ଅସହଯୋଗ ଆନ୍ଦୋଳନରେ ଝାସ ଦେଇପାରେ ଓ ଦେଶପାଇଁ ନିଜର ସ୍ୱାର୍ଥ ବଳି ଦେଇପାରେ । ଈଶ୍ୱରଙ୍କ ପ୍ରତି ଅଭିମାନ ତାଙ୍କ କବିତାରେ ପରିଦୃଷ୍ଟ ହୋଇଥାଏ । 'ଉଚ୍ଛ୍ୱାସ'ର କରପାଦଧୂଳି, ଅଭିଳାଷ, 'ଅଞ୍ଜଳି'ର କେତେକ କବିତାରେ ଏହି ସ୍ୱର ସ୍ପଷ୍ଟ । 'ଅର୍ଚ୍ଚନା'ରୁ ଉଦ୍ଧୃତିଟିଏ-

''ମୃତ୍ୟୁ ରୂପେ ଯଦି ଆସିବ କଟିକି
ସୁଖେ ମୁଁ ଘେନିବି କୋଳରେ
ଆଦରେ ମରଣ ବରଣ କରିଗୋ
ମରିବି ଚରଣ ତଳରେ ।''

ଅନ୍ୟତ୍ର ଦୁଃଖର ଚିରନ୍ତନତା ନେଇ ସେ ଦାର୍ଶନିକ ସୁଲଭ ବକ୍ତବ୍ୟ ପ୍ରକାଶ କରିଛନ୍ତି । ଅଞ୍ଜଳିରୁ -

''ସଂସାର ଗଗନେ ଦୁଃଖ ଧ୍ରୁବତାରା,
ଦୁଃଖ ମୋ' ପରାଣ ଶଶି

ଏ ସଂସାର ମରୁ ପ୍ରାନ୍ତରେ ଅଛି ମୁଁ,
ଦୁଃଖ ତରୁମୂଳେ ବସି ।''

ତାଙ୍କର ରୋମାଣ୍ଟିକ୍ ଭାବପ୍ରବଣତା ଭିତରେ ପ୍ରେମର ଯେଉଁ ସ୍ୱରୂପଟି ଫୁଟିଉଠେ, ତାହା ବିରହବତୁରା ଦୁଃଖ ମିଶ୍ରିତ ପ୍ରେମ, ଯାହାକି କବିଙ୍କୁ ଜୀବନର ସମ୍ମୁଖୀନ ହେବାପାଇଁ ଆତ୍ମବିଶ୍ୱାସ ଦେଇଛି । ତାଙ୍କର ପ୍ରେମ ବ୍ୟକ୍ତି ସ୍ତରରୁ ଆରମ୍ଭ ହେଲେ ହେଁ ତାହା ବିଶ୍ୱମାନବର ବ୍ୟଥା ଓ ବେଦନା ଭିତରେ ନିଜର ଅସ୍ତିତ୍ୱ ହଜାଇଛି । ତେଣୁ ତାଙ୍କପାଇଁ ପ୍ରେମ ଲୁଚା-ଚୋରା ନୁହେଁ, ପରିଚ୍ଛନ୍ନ ପରିବ୍ୟାପ୍ତ ଓ ସ୍ପଷ୍ଟ । ସେବିକାର ପ୍ରାର୍ଥନା, ଆବାହନ, ସନ୍ଧାନ, ବିରହେ, ଅଭିଳାଷ କାମନା, ପୂଜାପଦ୍ଧତି ଭଳି କବିତାରେ ତାଙ୍କର ପ୍ରେମର ସ୍ୱରୂପ ବେଶ୍ ଭାବମୟ । 'ଅଭିଳାଷ' କବିତାରୁ-

''କିମ୍ବା ଲୁଚାଚୋରା, ମାନ ଅଭିମାନ କିମ୍ବା
ଲୁଚକାଳି ଖେଳା
ତୁମ୍ଭେ ତ ମୋହର,ସଂସାର ସାଗରେ
ଜୀବନ ରକ୍ଷଣ ଭେଳା ।''

ଏ କବିତାରେ ପ୍ରେମର ନିବିଡ଼ତା ତଥା ବ୍ୟାପକତା ସମଭାବରେ ପାଠକକୁ ସ୍ପର୍ଶ କରିଥାଏ । ତାଙ୍କର ଆଶାବାଦର ଜୀବନ ଦର୍ଶନ 'ଶେଫାଳି ପ୍ରତି' କବିତାରେ ସ୍ପଷ୍ଟ । ଯେଉଁଠି ସେ ସ୍ପର୍ଦ୍ଧାରେ କହନ୍ତି,

''ଶେଷଗତି ନୁହେଁ ମୋର
ମୃତ୍ୟୁ କେଉଁ କାଳରେ
ମରିବାକୁ ଫୁଟିନାହିଁ ଭବତରୁ ଡ଼ାଳରେ ।''
ଏହି କବିତା ଆମ୍ଭକୁ ପୂର୍ବସୂରୀ

ମଧୁସୂଦନ ରାଓଙ୍କ 'କୁସୁମାଞ୍ଜଳି'ର କବିତା-
'ନିରାଶର କଥା ଛି ଛି କହିବି କେମନ୍ତେ
ଅନ୍ତରରେ ଅନୁଭବି ଅନନ୍ତ ବସନ୍ତେ ।''
କଥା ମନେ ପକାଇଦିଏ ।

'ଅଞ୍ଜଳି' କବିତା ସଙ୍କଳନର 'ବସନ୍ତେ' କବିତାରେ ସେ ଏହି ଅନନ୍ତ ବସନ୍ତର ସ୍ୱରକୁ ହିଁ ଶୁଣି ପାରିଛନ୍ତି ।

''ଦୁଃଖର କଥା ମୁଁ କହିବି ନାହିଁ ଲୋ
ମଧୁମାସ ମଧୁବାସରେ
ହୃଦବୀଣା ଛିନ୍ନ - ତାରକୁ ଯୋଡ଼ିଣ
ଗାଇବି ଗୀତ ମୁଁ ସୁସ୍ୱରେ ।''

ତାଙ୍କର 'ପ୍ରେମଚିନ୍ତାମଣି,' ବୈଷ୍ଣବ ତତ୍ତ୍ୱାଶ୍ରୟୀ ବାକ୍ୟଗ୍ରନ୍ଥ ନୁହେଁ । କବି ହୃଦୟର ଅସରନ୍ତି ଉଲ୍ଲାସରେ ପରିପୂର୍ଣ୍ଣ ସାବଲୀଳ କବିତା ସମୂହ । ଏଥିରେ ପ୍ରେମର ଦଶଦଶାର ଚିତ୍ର ପ୍ରଦତ୍ତ ହୋଇଛି ।

କୁନ୍ତଳାକୁମାରୀଙ୍କ ଜୀବନଚରିତ ଲେଖକ ଚକ୍ରଧର ମହାପାତ୍ରଙ୍କ ପରାମର୍ଶ ଅନୁସାରେ ଏହି ମାନବୀୟ ପ୍ରେମର ଭାବନା ମଧ୍ୟରେ ରାଧାକୃଷ୍ଣଙ୍କୁ ନାୟକ ନାୟିକା ଭାବରେ ଅବସ୍ଥାପିତ କରାଯାଇଛି । ଆତ୍ମପ୍ରକାଶ ପାଇଁ ଉନ୍ମୁଖ ଏହି ପ୍ରତିଭା ସକଳ ପ୍ରତିକୂଳ ଅବସ୍ଥା ମଧ୍ୟରେ ରହି ସାହିତ୍ୟ ସାଧନା କରୁଥିଲେ । ତେଣୁ ଅନେକତ୍ର ତାଙ୍କର ବ୍ୟକ୍ତିଗତ ପ୍ରେମମୂଳକ କବିତା ବିଶ୍ୱପ୍ରୀତିର ଉଦାରସ୍ୱର ମଧ୍ୟରେ ଆତ୍ମଗୋପନ କରିଥିବା ଜଣାଯାଏ ।

ସମାଜସେବା :

ସେ ଦିଲ୍ଲୀରେ ଅବସ୍ଥାନ କାଳରେ ମହାବୀର, ଜୀବନ ଓ ନାରୀଭାରତୀ ଭଳି ପତ୍ରିକାର ସଂପାଦନା ସହିତ ଜଡ଼ିତ ଥିଲେ । ଏଲାହାବାଦର ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ତଥା ଉତ୍ତର ଭାରତର ଅନ୍ୟ କେତେକ ବିଶ୍ୱବିଦ୍ୟାଳୟ ତଥା ଉତ୍ତର ଭାରତରେ ଅନ୍ୟ କେତେକ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ଭାଷଣ ଦେଇ ସେ ସମଗ୍ର ଭାରତର ଦୃଷ୍ଟି ଆକର୍ଷଣ କରିପାରିଥିଲେ । ତାଙ୍କର ପ୍ରଚଣ୍ଡ ସାଙ୍ଗଠନିକ ଶକ୍ତି ଥିଲା । ସେ ଥିଲେ All India Youth league ର ସଭାପତି । ଉତ୍କଳନାରୀ ସମିତିର ସଭାନେତ୍ରୀ, ଆଲିଗଡ଼ ଷ୍ଟୁଡ଼େଣ୍ଟସ୍ ଫେଡ଼େରେସନ୍‌ର ସଭାପତି, ମହାରାଣୀ ଲକ୍ଷ୍ମୀବାଈ ଜୟନ୍ତୀ ସମିତିର ସଭାପତି, ବୃନ୍ଦାବନ ଗୁରୁକୁଳ ବିଦ୍ୟାଳୟର ପ୍ରଶାସିକା ଓ ଭାରତୀ ତପୋବନ ସଂଘ, ଦିଲ୍ଲୀର ସଂଗଠିକା । ଜୀବନର ପ୍ରାରମ୍ଭରେ ଦାରିଦ୍ର୍ୟକୁ ଅଙ୍ଗେ ଲିଭାଇଥିବା କୁନ୍ତଳା ପ୍ରାଚୁର୍ଯ୍ୟ ଭିତରେ ରହି ମଧ୍ୟ ତାଙ୍କର ଅତୀତକୁ ପାଶୋରି ପାରି ନଥିଲେ । ତେଣୁ ସେ ନିଜର ପ୍ରଥମ ଉପାର୍ଜନରେ ପଚିଶି ଖଣ୍ଡ ଶାଢ଼ୀ କିଣି ଦରିଦ୍ର କନ୍ୟାମାନଙ୍କ ମଧ୍ୟରେ ବାଣ୍ଟି ଦେଇଥିଲେ ।

ଦିଲ୍ଲୀରେ ନାରୀ ସ୍ୱାଧୀନତା ପାଇଁ ଭାଷଣ ଦେଉଥିବା ସମୟରେ ସେ ପୋଲିସ୍ ଦ୍ୱାରା ଗିରଫ ହୋଇଥିଲେ । ସେ ସ୍ୱଦେଶୀ ବସ୍ତ୍ର ପିନ୍ଧିବା ପାଇଁ ଶପଥ ନେଇଥିଲେ ଓ ସମଗ୍ର ଜୀବନ କାଳ ମଧ୍ୟରେ ସେହି ଶପଥ ରକ୍ଷା ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ । ଏପରିକି ସେ ନିଜ ଘରର ସବୁ ଆସବାବ ପତ୍ର ମଧ୍ୟ ସ୍ୱଦେଶୀ ଢ଼ଙ୍ଗରେ ବଦଳାଇ ଦେଇଥିଲେ ।

ଖ୍ରୀ. ୧୯୨୭ରୁ ପୁରୀରେ ବିଖ୍ୟାତ ଓକିଲ ରାୟ ବାହାଦୂର ଲୋକନାଥ ମିଶ୍ରଙ୍କ ପତ୍ନୀ ଲାବଣ୍ୟବତୀ, ଶ୍ରୀମତୀ ଚଂଚଳା ଦେବୀ, ଶ୍ରୀମତୀ ଯମୁନା ଦେବୀ, ଶ୍ରୀମତୀ ରାଧାରାଣୀ ଦେଇ ଆଦି କେତେଜଣ ନାରୀଙ୍କୁ ନେଇ ଗଢ଼ି ଉଠିଥିବା 'ମହିଳାବନ୍ଧୁ ସମିତି' ଦ୍ୱାରା ସେ ୧୯୨୫ ମାର୍ଚ୍ଚ ୧୦ ତାରିଖ ଦୋଳପୂର୍ଣ୍ଣିମାଦିନ 'ଉତ୍କଳଭାରତୀ' ପଦବୀରେ ଭୂଷିତା ହୋଇ ଥିଲେ । ତାଙ୍କର ଅଞ୍ଜଳି, ଉଚ୍ଛ୍ୱାସ, କାଳୀବୋହୂ ଓ ପରଶମଣି ପୁସ୍ତକ ପାଇଁ ତାଙ୍କୁ ଏହି ଦୁର୍ଲ୍ଲଭ ସମ୍ମାନ ମିଳିଥିଲା । ସେହିବର୍ଷ ସେପ୍ଟେମ୍ବର, ୧୧ ତାରିଖରେ ପୁରୀ ମୁକ୍ତି ମଣ୍ଡପ ପଣ୍ଡିତ ସଭା ତରଫରୁ ତାଙ୍କୁ ଭ୍ରାନ୍ତି, ପରଶମଣି, ଅଞ୍ଜଳି ଓ ଉଚ୍ଛ୍ୱାସ ଗ୍ରନ୍ଥପାଇଁ ସ୍ୱତନ୍ତ୍ର ପ୍ରଶଂସା ପତ୍ର ମିଳିଥିଲା । ଜଣେ ଖ୍ରୀଷ୍ଟିୟାନ୍ ମହିଳାଙ୍କ ପକ୍ଷରେ ଏହା କମ୍ ସୌଭାଗ୍ୟର କଥା ନୁହେଁ । ସମାଜ ସଂସ୍କାର ତଥା ଜାତିଗଠନ ପାଇଁ ତାଙ୍କର ଉଦ୍ୟମ ବେଶ୍ ପ୍ରଶଂସନୀୟ । ମାତ୍ର ଆଠ, ଦଶ ବର୍ଷର ସମାଜସେବା ଓ ସାହିତ୍ୟ ସାଧନା ବଳରେ ସେ ନିଜପାଇଁ ଏକ ସ୍ୱତନ୍ତ୍ର ସ୍ଥାନ ସୃଷ୍ଟି କରିବାରେ ସମର୍ଥ ହୋଇପାରିଥିଲେ ।

ଆଜି ଉପନ୍ୟାସର ଶୈଳୀ ଓ ବିଷୟଗୁଡ଼ିକରେ ଯଥେଷ୍ଟ ନୂତନତ୍ୱ ପରିଦୃଷ୍ଟ ହେଉଛି । ଅନେକ ଢଙ୍ଗରେ ଉପନ୍ୟାସର ବକ୍ତବ୍ୟ ଉପସ୍ଥାପିତ ହେଉଛି । ସେହି ଦୃଷ୍ଟିରୁ କୁନ୍ତଳାଙ୍କ ଉପନ୍ୟାସ ଆଲୋଚନା କରାଯାଇ ପାରିବ ନାହିଁ । କାରଣ ଓଡ଼ିଶାରେ ଉପନ୍ୟାସ ରଚନାର ପ୍ରାକ୍‌କାଳରେ ରଚିତ ଏହି ଉପନ୍ୟାସଗୁଡ଼ିକ ଭାଷା ଓ ଭାବ୍‌ରେ ସରଳ । ଅତୀତରୁ ବର୍ତ୍ତମାନ ଆଡ଼କୁ ଏଗୁଡ଼ିକ ସିଧାସଳଖ ଗତିଶୀଳ । ବିଷୟରୁ ବିଷୟାନ୍ତରକୁ ଯିବାର ପ୍ରକ୍ରିୟା ମଧ୍ୟ ଅନାକର୍ଷଣୀୟ । ତଥାପି ଏଗୁଡ଼ିକ ତାଙ୍କର ସମାଜ ସଂସ୍କାର ଦୃଷ୍ଟିଭଙ୍ଗୀ ପ୍ରସୂତ ରଚନାବଳୀ, ଯେଉଁଥିରେ ସମସ୍ୟା ସଚେତନତା ସହିତ ସମାଧାନର ଉଦାର ଦୃଷ୍ଟିଭଙ୍ଗୀ, ଦୃଷ୍ଟିଗୋଚର ହୁଏ । ତାଙ୍କର କବିତାଗୁଡ଼ିକ ଏ ଦୃଷ୍ଟିରୁ ଅଧିକ ମନନଶୀଳ, କ୍ରାନ୍ତିଦର୍ଶୀ ତଥା ସ୍ୱୟଂ ସଂପୂର୍ଣ୍ଣ । ତାଙ୍କ ପୂର୍ବରୁ ଓଡ଼ିଶାରେ ସାହିତ୍ୟ ସୃଷ୍ଟି କରି କେତେକ ମୁଷ୍ଟିମେୟ ଲେଖିକା ସ୍ମରଣୀୟା । ସେମାନେ ହେଲେ ଜାହ୍ନବୀ ଦେବୀ, ସୁଚିତ୍ରା ଦେବୀ, ସରୋଜିନୀ ଦେବୀ ଓ ଶୈଳବାଳା ଦେବୀ, ପ୍ରମୁଖ । କିନ୍ତୁ କୁନ୍ତଳାଙ୍କ ଭଳି ଏମାନେ ନିଜର ସାହିତ୍ୟକୃତି ଓ ବ୍ୟକ୍ତିତ୍ୱ ପାଇଁ ଏତେବେଶି ଆଲୋଚନାର ପରିସରକୁ ଆସିପାରି ନଥିଲେ । କୁନ୍ତଳାଙ୍କ ଭାବମୟ ଜୀବନ ଓ ଯୁକ୍ତିସିଦ୍ଧ ଜୀବିକା ସମନ୍ୱିତ ହୋଇ ତାଙ୍କର ବ୍ୟକ୍ତିତ୍ୱ ନିର୍ମାଣ କରିଥିଲା । ତେଣୁ ସକଳ ଅବସାଦ ଦୁଃଖ ଯନ୍ତ୍ରଣା ସତ୍ତ୍ୱେ ଏକ ମହାଭାବମୟ ସତ୍ତା ତାଙ୍କୁ ସର୍ବଦା ଜବଳିତ କରି ରଖିଥିଲା ଓ ତାଙ୍କର ଆତ୍ମା ସେହି ସତ୍ତାପ୍ରତି ନିତ୍ୟ ଉନ୍ମୁଖ ରହିଥିଲା । ଜୀବନ ଓ ଜଗତକୁ ସେ ନାରୀର ସମାହିତ ଦୃଷ୍ଟିରେ ଦେଖିଛନ୍ତି ଓ ମନୁଷ୍ୟର ଅସହାୟତା ପ୍ରତି ସହାନୁଭୂତି ପ୍ରକାଶ କରିଯାଇଛନ୍ତି ।

ତାଙ୍କର ମହାପ୍ରୟାଣରେ ସରଳା ଦେବୀଙ୍କର ଉକ୍ତି ଏଠାରେ ବିଶେଷ ପ୍ରଣିଧାନର ଯୋଗ୍ୟ । ''ଦୂରପ୍ରବାସିନୀ ଥାଇ ଉତ୍କଳ କଥା ସେ ଜପ କରୁଥିଲେ, ଉତ୍କଳର ଗୃହ ପ୍ରାଙ୍ଗଣ ଉତ୍କଳର ଶୋଭନୀୟା ପ୍ରକୃତି, ଉତ୍କଳର ପୂର୍ବ ଗାରିମା, ଉତ୍କଳର ରୀତି ନୀତି, ଆଚାର ପଦ୍ଧତି, ଧର୍ମ ସଂସ୍କୃତି ଓ ତାହାର ସମ୍ଭାବନାମୟ ମହତର ଭବିଷ୍ୟତ କଥା, ତା'ର ବର୍ତ୍ତମାନର ଦୁର୍ବିସହ ବେଦନା ଲାଞ୍ଛନା ଯାହାଙ୍କର ଚିତ୍ତକୁ ଆଲୋଡ଼ିତ କରୁଥିଲା, କାବ୍ୟକଳାରେ ଯେ ଜାତିର ମୂଲ୍ୟ, ଜାତିର ଟେକ ଅଧିକ ବଢ଼ାଇ ଦେଇଛନ୍ତି; ତାଙ୍କୁ ଆଜି ସ୍ମରଣ କରୁଛି । ଜୀବନରେ କେବଳ ଦ୍ୱନ୍ଦ୍ୱ, ବେଦନା, ଅସହ୍ୟ ଗ୍ଲାନି ଓ ଅଶାନ୍ତି ଅସନ୍ତୋଷ ମଧ୍ୟରେ ତାଙ୍କର ଦିନଗୁଡ଼ିକ ବିତିଛି । ନିଜର ଅସହାୟ ଜୀବନର ପୁଞ୍ଜିଭୂତ ବେଦନାର ଭାର ସେ ଭଗବାନଙ୍କ ଚରଣରେ ନିବେଦନ କରିଛନ୍ତି ।''

ଏପର୍ଯ୍ୟନ୍ତ ତାଙ୍କର କୃତିତ୍ୱର ଯଥେଷ୍ଟ ଆକଳନ କରାଯାଇ ପାରିନାହିଁ । କୁନ୍ତଳାଙ୍କ ରଚନାବଳି ତାଙ୍କ ସମୟର ପରିଚ୍ଛନ୍ନ ଦର୍ପଣ, ଯାହା ଭିତରେ ତାଙ୍କର ନିଷ୍ଠା, ବିଶ୍ୱାସ ଓ ଦୃଢ଼ ବ୍ୟକ୍ତିତ୍ୱ ମିଶି ଯାଇଛି । ସେ ଦର୍ପଣରେ ଦିଶୁଛି ଏପରି ଏକ ସମୟର ମୁହଁ, ଯାହାକୁ ଦେଖି ଆତ୍ମବିଶ୍ୱାସ ଆସୁଛି ଯେ ପରିବର୍ତ୍ତନ ସମ୍ଭବ ଓ ତାହା ବ୍ୟକ୍ତିର ବିଶ୍ୱାସକୁ ପୁଞ୍ଜିକରି ହିଁ ଆସିପାରେ ।

ବିଭାଗୀୟ ମୁଖ୍ୟ, ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ
ବାଣୀବିହାର



# ନାରୀତ୍ୱ ଓ କବିତ୍ୱର ଅପୂର୍ବ ସମନ୍ୱୟ

## ଉତ୍କଳଭାରତୀ  କୁନ୍ତଳା କୁମାରୀ

*ଜ୍ୟୋତ୍ସ୍ନା ରାଉତରାୟ*

ଓଡ଼ିଶା ସାରସ୍ୱତ କ୍ଷେତ୍ରରେ ନାରୀ ପ୍ରତିଭାର ଆଜିଯେଉଁ ଅଭୂତପୂର୍ବ ଜାଗରଣ ସୃଷ୍ଟି ହୋଇଛି ତାର ଏକମାତ୍ର ପୁରୋଧା ଥିଲେ ଉତ୍କଳ ଭାରତୀ କୁନ୍ତଳା କୁମାରୀ ସାବତ । କେବଳ କବିତା ନୁହେଁ, ଔପନ୍ୟାସିକା ଓ ସାମ୍ବାଦିକା ହିସାବରେ ପରାଧୀନ ଭାରତରେ ତାଙ୍କର ଯେଉଁ ପ୍ରତିଷ୍ଠା ଥିଲା ତାହା କେବଳ ସେ ସମୟ ନୁହେଁ ବର୍ତ୍ତମାନ ମଧ ଜଣେ ସଫଳ ଓଡ଼ିଆ ନାରୀ ପାଇଁ ସୁଦୂର ସ୍ୱପ୍ନ । ବାଣୀସାଧିକା ବ୍ୟକ୍ତିତ୍ୱର ଅନ୍ତରାଳରେ ସେ ମଧ ଥିଲେ କନ୍ୟା, ପ୍ରେମିକା, ପ୍ରଣୟିନୀ, ଗୃହିଣୀ ଓ ମା । ପ୍ରଚଣ୍ଡ ପ୍ରତିଭାର ସ୍ଫୁଲିଙ୍ଗ ଏଇ ଅନନ୍ୟାଙ୍କୁ ମାୟାଧର ମାନସିଂହଙ୍କ ଭାଷାରେ କେବଳ ଏତିକି କୁହାଯାଇ ପାରେ ଯେ - ଓଡ଼ିଆ ନାରୀଶକ୍ତି ଶୋଭାଯାତ୍ରାର ଏକମାତ୍ର ଜୈତ୍ର ପତାକା ଧାରିଣୀ । ତାଙ୍କୁ କେବଳ ସାହିତ୍ୟିକ ଭାବରେ ବିଚାର କଲେ ଠିକ୍ ହେବନାହିଁ - ତାଙ୍କ ବ୍ୟକ୍ତିତ୍ୱର ଅନନ୍ୟ ବିଭବ ହେଉଛି, ସେ ଜଣେ ପ୍ରଗତିଶିଳା ସ୍ୱାବଲମ୍ବୀ ନାରୀ, ସତ୍ୟାନୁସନ୍ଧାନୀ ଏବଂ ଦେଶ ପ୍ରେମିକା । ପରାଧୀନ ଭାରତ କଳୁଷିତ ସମାଜରେ ପ୍ରେମ ପ୍ରଣୟ ଓ ମାତୃତ୍ୱ କ୍ଷେତ୍ରରେ ସେ ଯେଉଁ ବଳିଷ୍ଠ ପଦକ୍ଷେପ ଗ୍ରହଣ କରିଥିଲେ ତାହା ଏଇ ଏକ ବିଂଶ ଶତାବ୍ଦୀରେ ମଧ କୌଣସି ନାରୀ ଗ୍ରହଣ କରିବା ପୂର୍ବରୁ ଚିନ୍ତା କରିବ । ଯେହେତୁ କୁନ୍ତଳା କୁମାରୀ ଅନୁଭବ କରିଥିଲେ ଆତ୍ମାର ଆକାଂକ୍ଷା ନିକଟରେ ଜଗତର ସବୁକିଛି ମୂଲ୍ୟହୀନ ।

କୁନ୍ତଳାକୁମାରୀ ଥିଲେ ଖ୍ରୀଷ୍ଟିଆନ ପରିବାରର କନ୍ୟା । କିନ୍ତୁ କେତେକଙ୍କ ମତରେ କୁନ୍ତଳାଙ୍କର ଜେଜେ ଥିଲେ ପୁରୀ ଦାଣ୍ଡ ମୁକୁନ୍ଦପୁର ଗ୍ରାମର ଏକ ବ୍ରାହ୍ମଣ ପରିବାରର ପୁତ୍ର ଓ ଜେଜେମା ଥିଲେ ଖୋର୍ଦ୍ଧା ଅଞ୍ଚଳର ଗୋଟିଏ ଖଣ୍ଡାୟତ ପରିବାରର କନ୍ୟା । ଉଭୟ ଘଟଣାଚକ୍ରେରେ ପଡ଼ି ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ ମଧ କୁନ୍ତଳା କୁମାରୀଙ୍କର ମୂଳ ରକ୍ତ ଯେ ହିନ୍ଦୁଥିଲା ତାର ଉଦାହରଣ ମିଳିଥିଲା ତାଙ୍କର ଶେଷ ବୟସରେ । ଦିଲ୍ଲୀ ବାସଗୃହରେ ଜଗନ୍ନାଥମୂର୍ତ୍ତି ପ୍ରତିଷ୍ଠା କରି କୁନ୍ତଳା ସେବା ପୂଜାରେ ଶେଷଜୀବନ ଅତିବାହିତ କରିଥିଲେ ।

କୁନ୍ତଳାଙ୍କର ବାପା ଦାନିଏଲ - ସାବତ୍ ଥିଲେ ଡ଼ାକ୍ତର । ତେଣୁ କୁନ୍ତଳା କୁମାରୀଙ୍କର ଶୈଶବ ଓ କୈଶୋର କଟିଥିଲା ସୁଦୂର ବର୍ମାରେ । ଜନ୍ମମାଟି, ମାତୃଭାଷା ଠାରୁ ବିଛିନ୍ନ ହୋଇ ଯେଉଁ କୋମଳମତି ବାଳିକାଟି ସେଦିନ ବିଦେଶ ଓ ଅପରିଚିତ ପରିବେଶରେ ଦିନ କାଟିଥିଲା ତାର ପ୍ରତିକ୍ରିୟା ପ୍ରକାଶ ପାଇଥିଲା ପରବର୍ତ୍ତୀ ସମୟରେ ପରିଣତ ବୟସରେ । ଓଡ଼ିଶା ଓ ହିନ୍ଦୁ ସମାଜ ପ୍ରତି ଏକ ଉନ୍ନତ ଆବେଗ ସୃଷ୍ଟି ହୋଇଥିଲା ତାଙ୍କ ମନରେ । ଦାନିଏଲଙ୍କର ତିନିକନ୍ୟା ଓ ଦୁଇପୁତ୍ର ମଧରେ କୁନ୍ତଳା ଥିଲେ ଜ୍ୟେଷ୍ଠା । ଭୀଷଣ ବୁଦ୍ଧିମତୀ ବିଦ୍ୟାନୁରାଗିଣୀ ଏବଂ ଶିଶୁ ବୟସରୁ ସଙ୍ଗୀତ ପ୍ରତି ଥିଲା ଅପୂର୍ବ ଅନୁରାଗ । ଯିଶୁଖ୍ରୀଷ୍ଟଙ୍କ ଉପରେ ରଚିତ ଓଡ଼ିଆ ଭଜନ ଗାଇ ସେଇ ପିଲାବୟସରେ

ମଧ୍ୟ ସେ ଗଭୀର ଆତ୍ମତୃପ୍ତି ପାଉଥିଲେ । ସଂଗୀତ ଓ ବିଭିନ୍ନ ପାଠ୍ୟ ପୁସ୍ତକ ଅଧ୍ୟୟନ ଫଳରେ ମାତ୍ର ୧୦ ବର୍ଷ ବୟସରେ ସେ କବିତା ରଚନା ନିମନ୍ତେ ଲେଖନୀ ଚାଳନା କରିଥିଲେ । ପିଲା ବୟସରୁ ସେ ଥିଲେ ନିର୍ଭୀକ ଓ ସାହସୀ । କାହାରି ସ୍ୱାଧୀନତା ଉପରେ ସେ ଯେପରି ହସ୍ତକ୍ଷେପ କରିବାକୁ ପସନ୍ଦ କରୁନଥିଲେ, ସେହିପରି ମଧ୍ୟ ନିଜର ସ୍ୱାଧୀନତା କ୍ଷେତ୍ରରେ ସେ ଖୁବ୍ ସ୍ପଷ୍ଟ ଥିଲେ । ଏହାର ଉଦାହରଣ ଗୋଟିଏ ଘଟଣାରୁ ହିଁ ଜାଣିହୁଏ ।

ଏକାଦିକ୍ରମେ ବହୁଦିନ ପାଠ ପଢ଼ାରେ ନିମଗ୍ନ ରହିବାରୁ ଥରେ ବାପା ବିରକ୍ତ ହୋଇ ତାଙ୍କୁ ଆଗାମୀ ଏକ ସପ୍ତାହ ପାଇଁ ପାଏ ନପଢ଼ିବାକୁ କଟକଣା ଜାରି ରଖିଥିଲେ । ଏଥିପାଇଁ କୁନ୍ତଳା ୨୪ ଘଣ୍ଟା ଅନଶନ ଧର୍ମଘଟ କରି ବାପାଙ୍କ ବିରୁଦ୍ଧରେ ପ୍ରତିବାଦ ଜଣାଇ ଥିଲେ । ଏହି ନିର୍ଭୀକତାହିଁ ପରବର୍ତ୍ତୀ ସମୟରେ ତାଙ୍କୁ ସ୍ୱଦେଶ ସଂଗ୍ରାମରେ ଏବଂ ସାମାଜିକ ବିଦ୍ରୋହରେ ଜଣେ ନାରୀ ସୈନିକର ସମ୍ମାନ ଆଣି ଦେଇଥିଲା ।

ପାରିବାରିକ ଜଟିଳ ପରିସ୍ଥିତି ଦୃଷ୍ଟିରୁ କୁନ୍ତଳାଙ୍କ ବାପା ଦାନିଏଲ, ମା ମନିକାଙ୍କ ଠାରୁ ବିଛିନ୍ନ ହୋଇଗଲେ । କୁନ୍ତଳା ମା ଓ ଭାଇ ଭଉଣୀଙ୍କ ସହିତ ରହିଲେ ଖୋର୍ଦ୍ଧାରେ । ବଡ଼ ହୋଇଥିବାରୁ ପରିବାର ଦାୟିତ୍ୱ ପଡ଼ିଲା କୁନ୍ତଳାଙ୍କ ଉପରେ । ନିଜର ପାଠପଢ଼ା ସହିତ ମାଙ୍କ ଅନୁପସ୍ଥିତିରେ ଭାଇ ଭଉଣୀଙ୍କ ଯତ୍ନ ନିଅନ୍ତି । ନିଜେ ମଣିଷ ହୋଇ ଭାଇ ଭଉଣୀଙ୍କୁ ମଣିଷ କରିବେ । ବିଦ୍ୟାଳୟରେ କୁନ୍ତଳାଙ୍କର ଅଧ୍ୟୟନ ବ୍ୟବସ୍ଥା ହୋଇଗଲା, ହିନ୍ଦୁ ଓଡ଼ିଶା ଝିଅ ମାନଙ୍କ ସଂସ୍ପର୍ଶରେ ଆସିବା ଫଳରେ କୁନ୍ତଳାଙ୍କ ମନରେ ଏକ ଭିନ୍ନ ନାରୀସତ୍ତା ଜାଗି ଉଠିଲା । ହିନ୍ଦୁ ଚାଲିଚଳନ, ଓଷାବ୍ରତ ପ୍ରତି କ୍ରମଶଃ ସେ ଆକୃଷ୍ଟ ହେଲେ । ହିନ୍ଦୁତ୍ୱ ପ୍ରତି ଦୁର୍ବଳତାରୁ ହିଁ ସେ ଭଲପାଇଥିଲେ ଜଣେ ହିନ୍ଦୁ କୈଳାସଚନ୍ଦ୍ର ରାଓଙ୍କୁ । ଭଲ ପାଠ ପଢୁଥିବାରୁ ଅଷ୍ଟମ ଶ୍ରେଣୀ ପରେ ଡ଼ାକ୍ତରୀ ପାଠ ପଢ଼ିବା ପାଇଁ ସେ ମେଡ଼ିକାଲ ସ୍କୁଲରେ ନାମ ଲେଖାଇଲେ । ସେଇ ସ୍କୁଲରେ ଜଣେ ଶିକ୍ଷକ ଥିଲେ କୈଳାସ ରାଓ । ପରିବାରର ଦାୟିତ୍ୱ, ସାନଭାଇ ସାମୁଏଲର ମୃତ୍ୟୁ ତଥା ନିଜର ଲକ୍ଷ୍ୟସିଦ୍ଧି ପାଇଁ ସଂଗ୍ରାମ ଝଡ଼ଝଞ୍ଜା ଭିତରେ ମଧ୍ୟ ସେ ଆଗେଇ ଚାଲିଥିଲେ । କାରଣ ସେ ଅନୁଭବ କରିଥିଲେ ଭାଙ୍ଗି ପଡ଼ିଲେ ଚଳିବ ନାହିଁ । ଏକ୍‌ଲା ଚାଲିବାକୁ ପଡ଼ିବ ।

କୁନ୍ତଳା ଗଭୀର ଭାବରେ ଭଲ ପାଉଥିଲେ ହିନ୍ଦୁ ପରିବାରର ବିବାହିତ ଯୁବକ କୈଳାସ ରାଓଙ୍କୁ । ଏଥିପାଇଁ ସମାଜର ବହୁ ସମାଲୋଚନାକୁ ମଧ୍ୟ ସହ୍ୟ କରିବାକୁ ପଡ଼େ । କିନ୍ତୁ ପ୍ରୀତି ଅଭେଦ୍ୟ । ସମାଜକୁ ନଚାହିଁ ସେ ଚାଲିଥିଲେ ନିଜର ପ୍ରେମକୁ ନିଜର ମନର ଚାହିଦାକୁ । ଡ଼ାକ୍ତରୀ ପାଶ୍ କରି, ମୁକ୍ତମନା କୁନ୍ତଳା ସରକାରୀ ଚାକିରୀରେ ଯୋଗ ନଦେଇ ସ୍ୱାଧୀନ ଭାବରେ ରୋଗୀ ଚିକିତ୍ସା ଆରମ୍ଭ କଲେ । ଏଣେ କୈଳାସଚନ୍ଦ୍ରଙ୍କ ପ୍ରତି ପ୍ରେମ ନିବିଡ଼ ହେଉଥାଏ । ଗୋଟିଏ କନ୍ୟା ସନ୍ତାନର ପିତା ଏବଂ ନିଜଠାରୁ ୧୬ ବର୍ଷ ବଡ଼ କୈଳାସଙ୍କୁ ପ୍ରେମ କରିବା ସେ ସମାଜରେ ଥିଲା ଗୁରୁତର ଅପରାଧ । କିନ୍ତୁ କୁନ୍ତଳାଙ୍କ କୁମାରୀ ହୃଦୟ ଥରେ ଯାହାପ୍ରତି ନିବେଦିତ ହୋଇଯାଇଛି ତାହା କିପରି ଅନ୍ୟକୁ ଆରାଧ୍ୟ ଭାବରେ ଗ୍ରହଣ କରିବ । ପ୍ରତିଦିନ ସାକ୍ଷାତ ହୁଏ ଉଭୟଙ୍କର ।

କୁନ୍ତଳାଙ୍କ କବିତା ପଢ଼ି ମୁଗ୍ଧ ହୁଅନ୍ତି କୈଳାସ । ବ୍ୟଥିତ ହୁଅନ୍ତି, ସେ ଲେଖାରେ ବ୍ୟକ୍ତିଗତ ଅନୁଭବ ଏବଂ ସେ ହିଁ କେନ୍ଦ୍ରବିନ୍ଦୁ ହୋଇଥିବାରୁ । କୁନ୍ତଳାଙ୍କୁ ପରାମର୍ଶ ଦିଅନ୍ତି ଚିନ୍ତାଧାରାର ପରିବର୍ତ୍ତନ ପାଇଁ । କୁନ୍ତଳାଙ୍କୁ ଲେଖିକା ଭାବରେ ଲୋକ ଲୋଚନକୁ ଆଣନ୍ତି କୈଳାସ । ଓଡ଼ିଶାର ତତ୍‌କାଳୀନ ସଂଭ୍ରାନ୍ତ ପତ୍ରିକା ଉତ୍କଳ ସାହିତ୍ୟରେ କୁନ୍ତଳାଙ୍କ ଲେଖା ପ୍ରକାଶ ହୁଏ ମାତ୍ର ୨୨ ବର୍ଷ ବୟସରେ ।

ପ୍ରତିଷ୍ଠା ଓ ପ୍ରଶଂସା ଭିତରେ ବି ତାଙ୍କର ନାରୀ ସତ୍ତା ଚାହୁଁଥାଏ କୈଳାସ କିପରି ତାଙ୍କର ସ୍ୱାମୀ ହେବେ, କିପରି ତାଙ୍କ ସନ୍ତାନର ପିତାହେବେ । କିନ୍ତୁ ତାହା କିପରି ସଂଭବ ସେଇ ମୋହଗ୍ରସ୍ତ ସମାଜରେ ? ମାନସିକ ଅତୃପ୍ତି ଭିତରେ ଗୋପନରେ କୁନ୍ତଳା ସାକ୍ଷାତ କରନ୍ତି କୈଳାସଙ୍କ ସହିତ । ଏ ସମ୍ବାଦ କୈଳାସଙ୍କ ପତ୍ନୀ ତୁଳସୀ ଜାଣିବାକୁ ପାଇଲେ । କୁନ୍ତଳା ଅନ୍ୟ ଉପାୟ ନଦେଖି ବିନୟ ଓ ନମ୍ରତାର ସହିତ ତୁଳସୀଙ୍କୁ ମନୋବେଦନା ଜଣାଇଲେ । ତୁଳସୀ ଆଶ୍ଚର୍ଯ୍ୟ ହୋଇଗଲେ ଏତେ କମ୍ ବୟସ ଝିଅଟିର ସତୀତ୍ୱ ଓ ଏକାଗ୍ରତା ଦେଖି । ସେ କୁନ୍ତଳାଙ୍କୁ ନିଜ ଛାତି ଉପରକୁ ଆଉଜେଇ ନେଇ ନିଜ ହାତରେ ତାଙ୍କ ମଥାରେ ପିନ୍ଧାଇ ଦେଲେ ସଧବାର ଶ୍ରେଷ୍ଠ ନିଦର୍ଶନ ସିନ୍ଦୂର । ଗଦ୍ ଗଦ୍ କଣ୍ଠରେ କହିଲେ ଆଜିଠାରୁ ଆମେ ଦି ଭଉଣୀ ।

ମଣିଷ ମଣିଷକୁ ଆପଣାର କରିଦେଲା ସିନା, ସମାଜ ପାରିଲାନି । କୁନ୍ତଳା ହିନ୍ଦୁ ନୁହନ୍ତି । ବ୍ରାହ୍ମ ସମାଜଠାରୁ ମଧ୍ୟ ଅନୁମତି ମିଳିଲା ନାହିଁ । ଦିଲ୍ଲୀର ବ୍ରାହ୍ମ ସମାଜ ଅନୁମତି ଦେଇ ପାରନ୍ତି ଏଇ ଆଶାରେ କୁନ୍ତଳା ଦିଲ୍ଲୀ ଗଲେ । ଇତି ମଧ୍ୟରେ କୃଷ୍ଣପ୍ରସାଦ ବ୍ରହ୍ମଚାରୀ ନାମକ ଜଣେ ବ୍ୟକ୍ତିଙ୍କ ସହିତ କୁନ୍ତଳାଙ୍କ ପରିଚୟ ହୋଇଥାଏ । ଏଣେ ଦିଲ୍ଲୀର ଆର୍ଯ୍ୟ ସମାଜ ଅନୁମତି ଦେଲା । ଆନନ୍ଦରେ ଅଧୀର ହୋଇ କୁନ୍ତଳା କୈଳାସଙ୍କୁ ଚିଠି ଲେଖିଲେ ସେମାନଙ୍କର ସ୍ୱପ୍ନ ସାର୍ଥକ ହେବ । କିନ୍ତୁ କୈଳାସ ନିରବ । ଚିଠିଯାଏ ଉତ୍ତର ଆସେନା, କୈଳାସଙ୍କ ମୌନତାରେ ଦଗ୍ଧ ହୋଇ କୁନ୍ତଳା ବିବାହ କଲେ କୃଷ୍ଣପ୍ରସାଦ ବ୍ରହ୍ମଚାରୀଙ୍କୁ । କୁନ୍ତଳାଥିଲେ ଶିଳ୍ପୀ, ଉଦାରମନା । କୃଷ୍ଣପ୍ରସାଦ ଥିଲେ ଅର୍ଥ ପିପାସୁ ଜଣେ ସାଧାରଣ ମଣିଷ । ଲେଖିବା ପାଇଁ କୁନ୍ତଳା ଚାକିରିରୁ ଇସ୍ତଫା ଦେଲେ କିନ୍ତୁ ସ୍ୱାମୀ କହିଲେ ଡ଼ାକ୍ତରୀ ବ୍ୟବସାୟ କରି ଅର୍ଥ ଉପାର୍ଜନ ପାଇଁ ଏବଂ ସାହିତ୍ୟ ସାଧନା ବନ୍ଦକରିବା ପାଇଁ । ଦାରୁଣ ଆଘାତ ପାଇଲେ କୁନ୍ତଳା, ଦେହ ମିଶିଲା ସିନା, ମନ ମିଳିଲା ନାହିଁ, ମାତ୍ର ସ୍ୱାମୀଙ୍କ ବିରୋଧରେ ସେ କେବେ ପ୍ରତିବାଦ କରି ନାହାନ୍ତି । ସ୍ୱାମୀଙ୍କ ଅର୍ଥ ଲାଳସା ପାଇଁ ଚାକିରି କରି ଯେଉଁ ସମୟ ପାଆନ୍ତି ସେ ଲେଖନ୍ତି । ତାପରେ ମାତୃତ୍ୱ ଆସିଲା । କନ୍ୟା ଉତ୍କଳ କୁମାରୀ ଜନ୍ମଦେଲା । ସେତେବେଳେ ତାଙ୍କର ଦିଲ୍ଲୀ ଚିଠି ନାମକ ଗଦ୍ୟ ରଚନା ନିୟମିତ ସମାଜରେ ପ୍ରକାଶ ପାଉଥାଏ ।

ଥରେ ସ୍ୱାମୀଙ୍କର ଅପରିଣାମ ଦର୍ଶିତା ଯୋଗୁ ବହୁ ଆର୍ଥିକ କ୍ଷତି ସହିଥିଲେ କୁନ୍ତଳାକୁମାରୀ । ମାତ୍ର ସ୍ୱାମୀତ ଆଜୀବନ ଦେବତା । ତାଙ୍କ ବିରୋଧରେ ସେ ପ୍ରତିବାଦ ବା ଘୃଣା ମନ ଭିତରେ ଆଣିବେ କେମିତି ? ଦିଲ୍ଲୀରେ ପ୍ରେସ ବ୍ୟବସାୟ ଆରମ୍ଭ କଲେ ମଧ୍ୟ ତାହା କ୍ଷତିଗ୍ରସ୍ତ ହେଲା । ସେତେବେଳେ ସେ ଲେଖିକା ଭାବରେ ପ୍ରତିଷ୍ଠିତ ହୋଇ ସାରିଥାଆନ୍ତି । ବିଭିନ୍ନ ସଭା ସମିତିରୁ ତାଙ୍କ ପାଖକୁ ନିମନ୍ତ୍ରଣ ଆସେ କିନ୍ତୁ ସ୍ୱାମୀଙ୍କୁ କେହି ଡ଼ାକନ୍ତି ନାହିଁ । ସଙ୍କୁଚିତ କୁନ୍ତଳା ସ୍ୱାମୀଙ୍କୁ ଭକ୍ତି ଓ ସମ୍ମାନ ପ୍ରଦର୍ଶନ କରି ସଭାକୁ ଯାଆନ୍ତି ନାହିଁ । ମନେ ମନେ ଚିନ୍ତା କରନ୍ତି, ସେ ସବୁ ସ୍ଥାନକୁ ଯିବା

ଲାଗି ମୋର ସ୍ୱାମୀ ଯଦି ଅଯୋଗ୍ୟ ତେବେ ମୋର ସେଠାକୁ ଯିବା ଉଚିତ ନୁହେଁ, ବରଂ ଘରକାମ କରିବା ଭଲ । ନାରୀ ଯେ କେତେକ ସ୍ୱାର୍ଥ ତ୍ୟାଗ କରିପାରେ, ତାହା କୁନ୍ତଳା କୁମାରୀଙ୍କ ଭାବନାରୁ ହିଁ ପ୍ରତିପାଦିତ ହୁଏ ।

ଲାଗ୍ ଲାଗ୍ ଦୁଇଟି କନ୍ୟା ସନ୍ତାନର ଜନ୍ମ ପରେ ସ୍ୱାଭାବିକ ଭାବରେ ତାଙ୍କର ମାତୃ ହୃଦୟରେ ପୁତ୍ରଟିଏ ପାଇଁ ଆକୁଳତା ସୃଷ୍ଟି ହୋଇଥିଲା । ଜଣେ ଉଚ୍ଚଶିକ୍ଷିତା, ବୁଦ୍ଧିମତୀ ଡ଼ାକ୍ତର ହୋଇମଧ୍ୟ, ସେ ପୁତ୍ର କାମନାରେ ବୀର ଶହୀଦ ଭଗତସିଂହଙ୍କର ଶବଦାହ ସ୍ଥାନରୁ ମାଟିଆଣି ମୁଣ୍ଡରେ ଛୁଆଁଇଥିଲେ । ପୁଅଟିଏ ହେଲା । କର୍ମେନ୍ଦୁ ନାମଧାରୀ ଏଇ ପୁଅଟି କର୍ମ କରିବା ପୂର୍ବରୁ, ମାତ୍ର ମାସେ ପନ୍ଦରଦିନରେ ଆୟୁ ନେଇ ସେ ପୁରକୁ ଚାଲିଯାଇଥିଲା । ଏହାପରେ କୁନ୍ତଳା କୁମାରୀଙ୍କର ମାନସିକ ଯନ୍ତ୍ରଣା ବଢ଼ିଯାଇଥିଲା ଓ ସେ ଦୁଃଖ ଭୁଲିବା ପାଇଁ ଅଧିକ ଲେଖାରେ ମନୋନିବେଶ କରିଥିଲେ ।

ଯେଉଁ ସାହିତ୍ୟ ରସିକ କୈଳାସଚନ୍ଦ୍ର ତାଙ୍କୁ ସାହିତ୍ୟ ସାଧନାର ପ୍ରଥମ ପାହାଚ ଉଠାଇ ଦେଇଥିଲେ, ତାଙ୍କୁ ଜୀବନ ସାଥୀ ରୂପେ ନପାଇବାର ଦୁଃଖ କୁନ୍ତଳାଙ୍କ ମନ ଭିତରେ ଏକ ଚିରନ୍ତନ ଅବଶୋଷ ସୃଷ୍ଟି କରିଥିଲା । ଏହି ହୃଦୟ ଆବେଗ ଓ ନିଃସଙ୍ଗତା ଭିତରୁ ତାଙ୍କର ଅନବଦ୍ୟ ସାହିତ୍ୟ ଜନ୍ମ ନେଇଥିଲା । 'ପ୍ରେମ ଚିନ୍ତାମଣି', ରଘୁ ଅରକ୍ଷିତ, ଶେଫାଳୀ, ତାରା ପ୍ରଭୃତିରେ ନାରୀ ହୃଦୟର ଆବେଗ ସହିତ ଭଗବଦ୍ ପ୍ରେମ ମଧ୍ୟ ସୃଷ୍ଟି ହୋଇଛି । ମାନସିଂଙ୍କ ଭାଷାରେ-ସେ ଥିଲେ ନିହାତ୍ ନାରୀ । ଗୋଟିଏ ଛଳ ଛଳ ନାରୀ ପ୍ରାଣ ବହିଯିବାକୁ ଯେପରି ଚେଷ୍ଟା କରୁଛି । ଉଚ୍ଛନ୍ନ ହେଉଛି ପ୍ରାଣ ପ୍ରକାଶ ପାଇଁ । କାହା ଆଗରେ ପ୍ରକାଶ କରିବାକୁ ସେ ଯାଉଛି ସେଥିପ୍ରତି ଖାତିର ନାହିଁ । ସେଠାରେ ଚେତନ ଅଚେତନର ପ୍ରଭେଦ ନାହିଁ । ଦେଶର ମାଟି ଆଉ ପାଠକ ତାଙ୍କ ପାଖରେ ଏକ ଅଭିନ୍ନ । ବ୍ରତ କେବଳ ଶୁଣେଇ ଯିବା ।

କେବଳ ଲେଖିକା ଭାବରେ ନୁହେଁ, ଜଣେ ନେତ୍ରୀ ଭାବରେ ମଧ୍ୟ ସେ ବହୁ ଖ୍ୟାତି ଅର୍ଜନ କରିଥିଲେ । ସାଂସାରିକ ଜୀବନ ଓ ଲେଖିକା ଜୀବନ ଭିତରେ ସମନ୍ୱୟ ରକ୍ଷା କରି ସେ ବିଭିନ୍ନ ସଭା ସମିତିରେ ଯୋଗଦାନ ପାଇଁ ଚେଷ୍ଟା କରୁଥିଲେ । ୧୯୩୧ ମସିହାରେ ବାଲେଶ୍ୱର ଠାରେ ଅନୁଷ୍ଠିତ ରାଜ୍ୟସ୍ତରୀୟ ମହିଳା ଅଧିବେଶନରେ କୁନ୍ତଳାଥିଲେ ସଭାନେତ୍ରୀ । ତାଙ୍କ ଭାଷଣରେ ଫୁଟି ଉଠେ ନାରୀ ଜୀବନର ଅକୁହା କାହାଣୀ । ମନେହୁଏ ସତେ ଯେପରି କୁନ୍ତଳାଙ୍କର ଗୋଟିଏ ଜୀବନ ଭିତରେ ବହୁ ହୃଦୟର ଅକୁହା କାହାଣୀ ଭରି ରହିଥିଲା । ଯେଉଁଥିପାଇଁ ତାଙ୍କ ଭାଷଣଥିଲା ମର୍ମସ୍ପର୍ଶୀ । ଥରେ ଦିଲ୍ଲୀରେ ଗୋଟିଏ ଶ୍ରମିକ ସଭାରେ କୁନ୍ତଳାଙ୍କ ଭାଷଣ ଶୁଣିବାକୁ ଶହ ଶହ ମହିଳା ଧାଇଁ ଆସିଥିଲେ । ଏପରିକି ପୋଲିସ ଅଫିସର ଓ ବିଚାରପତି ମଧ୍ୟ ସେଠାରେ ଉପସ୍ଥିତ ରହି କୁନ୍ତଳାଙ୍କୁ ସମ୍ମାନ ପ୍ରଦର୍ଶନ କରିଥିଲେ ।

ଉତ୍କଳ ଭୂମି ଥିଲା କୁନ୍ତଳାଙ୍କର ଅତି ପ୍ରିୟ । ସେ କହୁଥିଲେ, ପରେ ମୁଁ ଭାରତୀୟ ନାରୀ କିନ୍ତୁ ପ୍ରଥମେ ମୁଁ ଯେ ଓଡ଼ିଆ । ଉତ୍କଳ ନୁହେଁ ଓଡ଼ିଆ ନୁହେଁ, ସେ ଚାହୁଁଥିଲେ କଳିଙ୍ଗ ନାମ ଉଚ୍ଚାରଣ କରି ସିଂହ ଭଳି ପରାକ୍ରମୀ ହେବାପାଇଁ ।

କୁନ୍ତଳାଙ୍କର ବିଶ୍ୱାସ ଥିଲା, ଈଶ୍ୱରଙ୍କର ଇଚ୍ଛା ଓ କରୁଣା ଦ୍ୱାରା ସବୁକିଛି ସଂଘଟିତ ହୁଏ । କେତେକ ମତ ଦିଅନ୍ତି, କୁନ୍ତଳା କୁମାରୀ ନିଜ ସ୍ୱାମୀଙ୍କ ଦ୍ୱାରା ଗୋଟିଏ ଅଶିକ୍ଷିତ ପରିବାରର ସ୍ତ୍ରୀ ଭଳି ନିର୍ଯ୍ୟାତନା ପାଉଥିଲେ । କିନ୍ତୁ କୁନ୍ତଳାଙ୍କର ନାରୀତ୍ୱର ମର୍ଯ୍ୟାଦା ଥିଲା ଅପରିସୀମ । ସେ ଭାବୁଥିଲେ ନର୍କରେ ବାସ କଲେମଧ୍ୟ ସେ ସ୍ୱାମୀ । ଏହା ସତ୍ତ୍ୱେ ମହାତ୍ମାଗାନ୍ଧୀଙ୍କର ଜଣେ ପଟ୍ଟଶିଷ୍ୟା ଭାବରେ ସେ ଚାହୁଁଥିଲେ ନାରୀ ଶିକ୍ଷିତା ହେଲେ ନିଜର ମର୍ଯ୍ୟାଦା ରକ୍ଷା କରିପାରିବ ।

ତାଙ୍କର ଉପନ୍ୟାସ କାଳୀବୋହୂ ରେ ସେ ବାଲ୍ୟବିବାହ ବିରୋଧରେ ସ୍ୱର ଉତ୍ତୋଳନ କରିଛନ୍ତି । ଦଶବର୍ଷର ଝିଅଟିଏ ବିଧବା ହୋଇ ଦୁଃଖ ସହିବ ସାରାଜୀବନ କିନ୍ତୁ ଅନ୍ୟତ୍ର ବିବାହ କରି ପାରିବ ନାହିଁ । ଗୋଟିଏ କନ୍ୟାକୁ ପାଞ୍ଚବର ଏକାଠି ବାହାହେଲେ ମଧ ତାର ସତୀତ୍ୱ ନଷ୍ଟ ହେଲାନାହିଁ ଅଥଚ ବାଳବିଧବାଟି ଦ୍ୱିତୀୟ ପତି ଗ୍ରହଣ କଲେ ସମାଜ ରସାତଳକୁ ଯିବାର ଆଶଙ୍କା ! ନାରୀ ଶକ୍ତିର ମର୍ଯ୍ୟାଦାକୁ ଅକ୍ଷୁର୍ଣ୍ଣ ରଖିବା ପାଇଁ କୁନ୍ତଳା କୁମାରୀ କାଳୀବୋହୂ ଉପନ୍ୟାସରେ ଲେଖିଛନ୍ତି, ହେ କ୍ରୂର କାମିନୀ ବର୍ଗ ! ତୁମେ କିପରି ଚାରିବେଳା ଭାତଧରି ଖାଉଛ । ରୋହୀ ମାଛ, ଇଲିସି, ତାମ୍ପଡ଼ା, ନହେଲେ ଭାତ ରୁଚୁ ନାହିଁ । ଅଥଚ୍ ତୁମରି ନଣନ୍ଦଟି, ତୁମରି ଭାଉଜଟି ବେଳାଏ ଅରୁଆ ମୁଠାକୁ ସମ୍ବଳ କରି ପଡ଼ି ରହିଛି ।

ସଂସ୍କାର ଧର୍ମୀ ଲେଖିକା କୁନ୍ତଳା କୁମାରୀ ନିଜର ସ୍ୱଳ୍ପ ଜୀବନ କାଳ ମଧରେ ନାରୀ ସ୍ୱରାଜ୍ୟ ପ୍ରତିଷ୍ଠା ପାଇଁ ଲେଖନୀ ଚାଳନା କରିବା ସହିତ ଭାଷଣ ମଧ ପ୍ରଦାନ କରୁଥିଲେ । ନିଜସ୍ୱ ଅନୁଭୂତିରୁ ସେ ଜାଣିପାରିଥିଲେ ଯେ, ନିଜର ସୁଖ ଦୁଃଖ ପାଇଁ ଦାୟୀ ନିଜେ ନାରୀ ଏବଂ ନିଜେ ମଧ୍ୟ ନିଜର ରକ୍ଷାକର୍ତ୍ତ୍ରୀ । ବ୍ରହ୍ମଚାରୀଙ୍କୁ ବିବାହ କରି ସେ ଯୌବନ ଓ ତାରୁଣ୍ୟର ପରିତୃପ୍ତି ପାଇଥିଲେ ସିନା ମାନସିକ ଶାନ୍ତି ତାଙ୍କୁ ମିଳିନଥିଲା । ଡ଼ାକ୍ତରୀ ପଢ଼ିବା ସମୟରେ ଗୋଟିଏ ଶାଢ଼ୀକୁ ସମ୍ବଳ କରି ସେ ଚଳୁଥିଲେ । ପୁରୀର ମୁକ୍ତି ମଣ୍ଡପ ପରିଷଦ କୁନ୍ତଳାଙ୍କୁ ତାଙ୍କର ସାହିତ୍ୟ ରଚନା ପାଇଁ ଭୂୟସୀ ପ୍ରଶଂସା କରିଥିଲେ । ଏଠାକାର ମହିଳାବନ୍ଧୁ ସଙ୍ଗଠନ ତାଙ୍କୁ ଉତ୍କଳ ଭାରତୀ ଉପାଧି ପ୍ରଦାନ କରିଥିଲ ।

କେଉଁ କିଶୋରୀ ବୟସରେ ତାଙ୍କର ଶେପାଳୀପ୍ରତି କବିତା ପ୍ରାଣକୁ ବ୍ୟଥିତ କରିଥିଲା ଏବଂ ଏପର୍ଯନ୍ତ କରିଆସୁଛି । ଉତ୍କଳ ଭାରତୀଙ୍କର ସ୍ମୃତିରକ୍ଷା ପାଇଁ କୌଣସି ଉଦ୍ୟମ ନାହିଁ କହିଲେ ଚଳେ । କିନ୍ତୁ ଆଜି ଏଇ ଏକବିଂଶ ଶତାବ୍ଦୀରେ ପାଦଦେଇ ମନରେ ଗୋଟିଏ ପ୍ରଶ୍ନ ଦୋହରେଇ ହୁଏ - ଯଦି ସ୍ୱାଧୀନତା ପୂର୍ବବର୍ତ୍ତୀ ସମୟରେ କୁନ୍ତଳା କୁମାରୀ ନାମକ ଜଣେ ନାରୀ ସେ କାଳର କୁଣ୍ଠିତ ଅବସାଦ ଗ୍ରସ୍ତ ସମାଜର ନୀତି ନିୟମକୁ ଉପେକ୍ଷା ନକରି ନିଜ ଶିକ୍ଷା, ଦୀକ୍ଷା ତଥା ସ୍ୱାଧୀନ ମନୋଭାବକୁ ଜୀବନର ପାପପୁଣ୍ୟକୁ ଲେଖନୀରେ  ଜୀବନ୍ତରୂପ ଦେଇ ପାରୁଥିଲେ ତେବେ ଆଜି ଆମେ ସବୁ କ୍ଷେତ୍ରରେ ପ୍ରତିଷ୍ଠା ପାଇମଧ ଆମେ ସେତିକି ସତ୍‌ସାହସ କାହିଁକି ସଂଗ୍ରହ କରି ପାରୁନୁ । କେଉଁଠି ଆମର ବାଧା ? ଏ ପ୍ରଶ୍ନର ଉତ୍ତର ଆମେ ଖୋଜିବା ଉଚିତ ।

ବନ୍ଦେ ଉତ୍କଳ ଜନନୀ ।

ମା - ଜୀମୂତ ମଙ୍ଗରାଜ, ଥ୍ରୀଆର - ୧୬୭,
ୟୁନିଟ୍ - ୯, ରୋଡ଼ - ୨, ଭୁବନେଶ୍ୱର



# ଜନ୍ମ ଶତବାର୍ଷିକୀରେ ଉତ୍କଳଭାରତୀ କୁନ୍ତଳାକୁମାରୀଙ୍କ ପ୍ରତି

# ଏକ ଶ୍ରଦ୍ଧାଞ୍ଜଳି

ଡ଼ଃ ଶକୁନ୍ତଳା ବଳିଆ ସିଂହ

୮.୨.୧୯୦୦ ରୁ ୮.୨.୨୦୦୦ ଅନପେକ୍ଷିତ ମହାକାଳର ଧାରାଟିଏ ଶହେବର୍ଷର । କୁନ୍ତଳାକୁମାରୀ - ଓଡ଼ିଆ ସାହିତ୍ୟର କାବ୍ୟ - କୋକିଳ । ଉତ୍କଳ ଭାରତୀଙ୍କ ଜନ୍ମ ଜୟନ୍ତୀ, ଜନ୍ମ ଶତବାର୍ଷିକୀ ଦିବସ - ସ୍ୱର୍ଣ୍ଣନକ୍ଷତ୍ର ଦିବସ । ଯାହାଙ୍କ କବିତା ନେଇ ମୋ' ନିଜର ଶୈଶବ ଜୀବନର ବହୁ ଦିନ, ବାର, ନକ୍ଷତ୍ର ଅତିବାହିତ - ଯାହାର ଅନେକ କବିତା ପଂକ୍ତିର କାବ୍ୟୋଚ୍ଛ୍ୱାସ ମୋର ଶୈଶବ ଜୀବନର ହୃଦୟରେ ସୃଷ୍ଟି କରିଥିଲା ଅନେକ ଉଦ୍‌ବେଳନ, ସେଇ ଉଦ୍‌ବେଳନର ଧାରା ଆଜି ମୋ ଜୀବନ ଉତରାୟଣରେ ବି ସୃଷ୍ଟି କରି ଚାଲିଛି ଏକ ଅପୂର୍ବ କାବ୍ୟିକ ଅନୁରଣରେ ତଲ୍ଲୀନତା । ଆଜି ତାଙ୍କରି ପ୍ରତି ଅର୍ପଣ କରିବା ଆମ ଅନ୍ତରର ଶ୍ରଦ୍ଧାଞ୍ଜଳି ।

ବର୍ମାରେ ଜନ୍ମଗ୍ରହଣ କରିଥିଲେ କୁନ୍ତଳା । ସେଠାରେ ତାଙ୍କର ଜୀବନର ପ୍ରଥମ ପନ୍ଦର ବର୍ଷ ବିତିଥିଲା - ସେହି ସମୟରେ ସେ ଓଡ଼ିଆ, ଇଂରାଜୀ, ହିନ୍ଦୀ ଓ ବଂଗଳା ଭାଷାରେ ପାରଦର୍ଶୀ ହେବାକୁ ଚେଷ୍ଟା କରିଥିଲେ - ଏଣେ ବାଇବେଲ ମୁଖସ୍ଥ କରିଥିଲେ, ବର୍ଣ୍ଣବୋଧଠାରୁ ସାହିତ୍ୟକୁସୁମ, ସାହିତ୍ୟତରଂଗ ଅଧ୍ୟୟନ କରିଥିଲେ । - ଏହା ସାଙ୍ଗକୁ ତାଙ୍କର ଥିଲା ସଂଗୀତପ୍ରତି ଗଭୀର ଅନୁରାଗ - କଣ୍ଠ ବିଥିଲା କୋକିଳ ପରି ସୁମଧୁର । ସମ୍ଭବତଃ ଏହି ଯୋଗାଯୋଗ ଥିଲା ଜନ୍ମାନ୍ତରର ଗୁଣ ।

ପନ୍ଦର ବର୍ଷ ବେଳକୁ ସେ ଫେରି ଆସିଲେ ଓଡ଼ିଶାକୁ ମାଆଙ୍କ ସାଥିରେ । ୧୯୧୭ରେ ରେଭେନ୍ସା ଗାର୍ଲସ ସ୍କୁଲରୁ ମେଟ୍ରିକ ପାଶ୍‌କରି କଟକ ମେଡ଼ିକାଲ ସ୍କୁଲ ଇଣ୍ଟରଭିଉରେ ପ୍ରଥମ ହୋଇ ଆଡ୍‌ମିଶନ ନେଲେ । ଚାରିବର୍ଷ ମେଡ଼ିକାଲ ଶିକ୍ଷା ମଧ୍ୟରେ ସେ ମୋଟ ଷୋଳଟି ରୌପ୍ୟ ଓ ସ୍ୱର୍ଣ୍ଣ ପଦକ ଲାଭ କରିଥିଲେ ଓ ବିହାର - ଓଡ଼ିଶା ମେଡ଼ିକାଲ ବୋର୍ଡ଼ ଫାଇନାଲ ପରୀକ୍ଷାରେ ସର୍ବୋଚ୍ଚ ନମ୍ବର ରଖି ପ୍ରଥମ ହୋଇଥିଲେ ।

ସେତେବେଳକୁ ସେ ବିଂଶବର୍ଷୀୟା ତରୁଣୀ - ଡ଼ାକ୍ତର କବି, ସଂଗୀତଜ୍ଞ - ଏହି ସମସ୍ତ ଗୁଣର ଅଧିକାରିଣୀ - ଏଭଳି ଅପୂର୍ବ ପ୍ରତିଭାର ସମାହାର ଥିଲା ଏକ ନାରୀ ୧୯୨୧ ମସିହାରେ, ଯାହା ଆଜି ମଧ୍ୟ ନାରୀଜଗତରେ ବିରଳ ।

୧୯୨୧ରୁ ୧୯୨୮ - ଆଠବର୍ଷ ଥିଲା ଡ଼ାକ୍ତରାଣୀଙ୍କ ଖ୍ୟାତିର ସମୟ । ସାହିତ୍ୟିକା ଭାବରେ ତାଙ୍କର ପ୍ରଥମ କବିତା ଥିଲା 'ତାରାପ୍ରତି' । ତାପରେ ପରେ 'ଶେଫାଳୀ ପ୍ରତି' ଓ 'କମଳପ୍ରତି' ପ୍ରକାଶ ପାଇଲା କ୍ରମାଗତ ଭାବରେ 'ଉତ୍କଳସାହିତ୍ୟ'ରେ ।

'ନିଆଁଖୁଣ୍ଟା' ସଂପାଦକ ତା ୨୬-୬-୨୬ ରିଖରେ ଏକ ଚିଠିରେ ଲେଖିଥିଲେ : 'ଉତ୍କଳସାହିତ୍ୟରେ ଆପଣ କେବଳ ତାରାରୂପରେ ନ ରହି ଲଣ୍ଠାତାରା ରୂପରେ ତୁମୁଳ ପରିବର୍ତ୍ତନ ଘଟାଇବେ ବୋଲି ଆଶା' ।

ଏଭଳି ସୌହାର୍ଦ୍ଦ୍ୟପୂର୍ଣ୍ଣ ଚିଠିର କାରଣ ଥିଲା ଓଡ଼ିଆ ଝିଅଟିଏ ଏପରି ଯୁଗୋଚିତ କବିତା ଲେଖିପାରିବା ସମସ୍ତଙ୍କୁ ଚକିତ କରିଦେଇଥିଲା । ଫଳସ୍ୱରୂପ ୧୯୨୩-୨୪ରେ ପ୍ରକାଶ ପାଇଥିଲା ତାଙ୍କର ବୈପ୍ଳବିକ ବାଣୀ ବହନ କରିଥିବା ଭ୍ରାନ୍ତି' ଉପନ୍ୟାସ, 'ଉଚ୍ଛ୍ୱାସ' କବିତା ଗ୍ରନ୍ଥ ।

ଏହି ଦେଶପ୍ରେମୀ, ପ୍ରକୃତି ସଚେତନ କବିର ଆଉ ଏକ ମହାନଗୁଣ ଥିଲା ଦରିଦ୍ର, ଅନ୍ଧ ଛାତ୍ର ତଥା ସାହିତ୍ୟିକମାନଙ୍କୁ ବିବିଧ ପ୍ରକାରେ ସାହାଯ୍ୟ କରିବା ।

ପୁଣି ଓଡ଼ିଶାର ନାରୀଜଗତରେ ମର୍ଯ୍ୟାଦାବୋଧ, ଅତିଥି ବତ୍ସଳତା, ସ୍ନେହ ଓ ସୌନ୍ଦର୍ଯ୍ୟ ଦେଖି ସେ ସବୁବେଳେ ମୁଗ୍ଧ ହେଉଥିଲେ । ଏହି ବିଦ୍ୟାଳୟ ଡ଼ିଗ୍ରୀ ହୀନା ନାରୀମାନେ କେଉଁଠାରୁ କିପରି ଏପରି ଆଚରଣ ସଂହିତା ଶିଖିଥିଲେ ଭାବି ଆଶ୍ଚର୍ଯ୍ୟ ହେଉଥିଲେ ।

ଏହିକାର୍ଯ୍ୟ ପ୍ରଚାର ସେ ବିଭିନ୍ନ ସଭାସମିତିର ଭାଷଣ ଜରିଆରେ କରିଥିଲେ । ଏହି ଭାଷଣ ଗୁଡ଼ିକ ଥିଲା ସୁଚିନ୍ତିତ ଓ ପ୍ରେରଣା ପୂର୍ଣ୍ଣ । ସେ ଗାୟିକା ଥିବା ହେତୁ ସ୍ୱରଥିଲା ସୁଲଳିତ ଓ ଭାଷାଥିଲା କବିତ୍ୱପୂର୍ଣ୍ଣ ।

୧୯୨୭ରେ ପ୍ରକାଶ ପାଇଥିଲା ତାଙ୍କର ବହୁ ଚର୍ଚ୍ଚିତ ଉପନ୍ୟାସ 'ରଘୁଅରକ୍ଷିତ' ଓ କବିତା ପୁସ୍ତକ 'ଅର୍ଚ୍ଚନା' । ଏହି ସମୟରେ ତାଙ୍କ ରଚନା, ଭାଷଣ ଓ ଆଚାର ଚଳଣୀରେ ସ୍ୱଦେଶୀ ହେବାର ନିଶା, ଜାତିପ୍ରେମ, ସ୍ୱାଧୀନସଂକଳ୍ପ ବହୁଳ ଭାବରେ ପ୍ରକାଶିତ ହୋଇଥିଲା ।

ଓଡ଼ିଆ ସାହିତ୍ୟ ନିକୁଞ୍ଜର କଳକଣ୍ଠୀ କୋକିଳା କୁନ୍ତଳାକୁମାରୀ ୧୯୨୮ରେ ଚାଲିଗଲେ ଦିଲ୍ଲୀ ଓ ସେଠାରେ ଡ଼ାକ୍ତରୀ ପ୍ରାକ୍ଟିସ କଲେ । ଚାହୁଁଚାହୁଁ ତାଙ୍କ ଅମୃତହସ୍ତର କରାମତି ବିଖ୍ୟାତ ହେଲା ସାରା ସହରରେ । ଦିଲ୍ଲୀର ସାହିତ୍ୟିକ, ରାଜନୀତିକ ଓ ସାମାଜିକ କ୍ଷେତ୍ରରେ ସେ ଲାଭକଲେ ସମ୍ମାନନୀୟ ପ୍ରତିଷ୍ଠା । ଓଡ଼ିଶାର ଜଣେ ନାରୀକୁ କେନ୍ଦ୍ରକରି ଦିଲ୍ଲୀର ସର୍ବଭାରତୀୟ ଦରବାରରେ ବିକଶିତ ହେଲା ଓଡ଼ିଆ ବ୍ୟକ୍ତିତ୍ୱ ଓ ଚରିତ୍ରର ମହାନ ଆଦର୍ଶ ।

୧୯୨୯ରେ 'ସ୍ଫୁଲିଙ୍ଗ' କବିତା ପୁସ୍ତକର ପ୍ରକାଶନସହ ଗୁରୁକୁଳ ବୃନ୍ଦାବନ ବାର୍ଷିକୋତ୍ସବରେ ତାହାଙ୍କ ପ୍ରଦତ୍ତ ଜ୍ୱାଳାମୟୀ ଭାଷଣ ସମସ୍ତଙ୍କୁ ଚମକୃତ କରିଦେଇଥିଲା - ଓଡ଼ିଆ ଝିଅ ଡ଼ାକ୍ତରାଣୀ, ପୁଣି ଏଭଳି ଓଜସ୍ୱିନୀ ଭାଷାରେ ବାଗ୍ମୟୀ !

୧୯୩୦ରେ ପ୍ରକାଶିତ ହୋଇଥିଲା 'ଆହ୍ୱାନ' କବିତା ପୁସ୍ତକ । ସ୍ୱାଧୀନତା ଆନ୍ଦୋଳନର ଆହ୍ୱାନ ଏହାର ପ୍ରତିଟି ପଂକ୍ତିକୁ କରିଥିଲା ରସାଣିତ ।

ସେନାପତି ଆଜି ଦେଇଛନ୍ତି ଡ଼ାକ
ଉଠ ଭାରତର ବୀରପୁତ୍ର ଯାକ

ସ୍ୱରାଜ୍ୟ ଆମ୍ଭର ଜନ୍ମ ଅଧିକାର
କାମ୍ୟ ସ୍ୱାଧୀନତା ଧେୟ ଶ୍ରେଷ୍ଠ ସାର' ।

ଏହି ସମୟରେ ଏଲାହାବାଦ ବିଶ୍ୱବିଦ୍ୟାଳୟ, ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ସମେତ ଉତ୍ତର ପ୍ରଦେଶର ବିଭିନ୍ନ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ସେ ଦୀକ୍ଷାନ୍ତ ଭାଷଣମାନ ପ୍ରଦାନ କରିଥିଲେ । ଓଡ଼ିଆବାସୀଙ୍କ ଭାଗ୍ୟରେ ଏଭଳି ଗୌରବ ବୋଧହୁଏ ଥିଲା ସର୍ବପ୍ରଥମ । ଆଜିପର୍ଯ୍ୟନ୍ତ ସମ୍ଭବତଃ କୌଣସିନାରୀ ଏତାଦୃଶ୍ୟ ସାଂସ୍କୃତିକ ଗୌରବ ଓଡ଼ିଶା ପାଇଁ ଆଣି ପାରିନାହାନ୍ତି ।

୧୯୩୮ରେ ଏହି ମହାନ୍ ପ୍ରତିଭାଙ୍କର ଅକାଳ ବିୟୋଗ ଘଟିଥିଲା - କୁନ୍ତଳାକୁମାରୀଙ୍କର ଶରୀରରେ ଥିଲା ସୂର୍ଯ୍ୟର ଦୀପ୍ତି, ଚନ୍ଦ୍ରର କାନ୍ତି । ଯୁବତୀସୁଲଭ ସୌନ୍ଦର୍ଯ୍ୟ ସହ ପୁରୁଷର ପ୍ରଖର ଶୌର୍ଯ୍ୟସମନ୍ୱିତ ଗୋଟିଏ ରୁଦ୍ର-ସୁନ୍ଦର ମୂର୍ତ୍ତି । ଏକପକ୍ଷରେ ପୂଜାରିଣୀ ପରି ହାତରେ ତାଙ୍କର 'ଅର୍ଚ୍ଚନା' ଲାଗି 'ଅଞ୍ଜଳି' ଓ ହୃଦୟରେ 'ଉଚ୍ଛ୍ୱାସ', ଓ ଆଖିରେ 'ସ୍ଫୁଲିଙ୍ଗ' । ଏହି ସୃଷ୍ଟିଶୀଳା କବି ଓ ଜନସେବିକା କୁନ୍ତଳାକୁମାରୀ ଥିଲେ ଉଦୟ ସୂର୍ଯ୍ୟ ପରି ମହାନ ଓ ଦୀପ୍ତିମୟୀ, ଯାଜ୍ଞସେନୀ ସଦୃଶ ଶକ୍ତି ସ୍ୱରୂପିଣୀ ।

ସ୍ୱାଧୀନତାର ଅଗ୍ରଣୀ ସେବକ ମାନଙ୍କ ପରି ସେ ଏହି ପୀଡ଼ିତ, ମୂର୍ଚ୍ଛିତ ଉତ୍କଳ ଜନସମାଜରେ ମୂକମୁଖରେ ଭାଷାଫୁଟାଇ ଦେଶର ସ୍ୱାଧୀନତା ଆନ୍ଦୋଳନରେ ସ୍ୱାଧୀନ ଆକାଂକ୍ଷାକୁ ମୁକ୍ତ କଣ୍ଠରେ ଗାଇ ଯାଇଛନ୍ତି ।

ଜ୍ଞାନପୀଠ ବିଜୟୀ କବି ସଚ୍ଚି ରାଉତରାୟ ଉତ୍କଳଭାରତୀଙ୍କ ମୃତ୍ୟୁରେ ଲେଖିଥିଲେ -

''ନୁହେଁ ସେତ ଖାଲିନାରୀ, ଖାଲିମାତା, ଅବା ଖାଲିକବି
ଜାତୀୟ ସମରେ ସେ ଯେ ସଇନିକ ତୋଳିଛି ଭୈରବୀ,
ଆଗେ ସେ ଧରିଛି ଅସୀ ପଛେସିନା ଧରିଛି ଲେଖନୀ
ତେଣୁ ତାର ପ୍ରତିଗାନେ ଥରିଉଠେ ଦେଶର ଧମନୀ'' ।

ଆଜି ତାଙ୍କୁ ସ୍ମରଣ କରିବା ଅବସରରେ ଏତିକି କୁହାଯାଇ ପାରେ ଯେ, ମନଭିତରେ ସେତିକି ଉଦାର, ମହାନ ନହେଲେ ଜଣେ ଏକାଧାରରେ ଦେଶସେବୀ, ଡ଼ାକ୍ତର, କବି ତଥା ଭଲ ମଣିଷଟିଏ ହେବା ସମ୍ଭବ ନୁହେଁ । ସମସ୍ତ ପ୍ରତିଭାଶାଳୀ ବ୍ୟକ୍ତିତ୍ୱ ଅଳ୍ପାୟୁ ହେବାପରି କୁନ୍ତଳା କୁମାରୀଙ୍କ ସ୍ୱଳ୍ପ ଜୀବନ କାଳ ମଧ ତାଙ୍କ ପ୍ରତିଭାବିକାଶର ପ୍ରତିବନ୍ଧକ ହୋଇପାରି ନଥିଲା ।

ଭଗବତ ଶକ୍ତିରେ ଶକ୍ତିମୟୀ ଏହି କବି ନିଜର ଯୋଗ୍ୟତା, ପାଣ୍ଡିତ୍ୟ ଓ ଅଧବସାୟ ବଳରେ ଉତ୍କଳପାଇଁ ଯେଉଁ ସୁନାମ ଅର୍ଜନ କରିଯାଇଛନ୍ତି ତାହା ସ୍ମରଣ କରି ଏହି ପୂଜନୀୟ ବିଦୁଷୀଙ୍କର ସାହିତ୍ୟକୃତିର ଅଧିକରୁ ଅଧିକ ଆଲୋଚନା ହେବ ବୋଲି ଆମେ ଆଶା କରୁଛୁ ।

*ସଂପାଦିକା, ଓଡ଼ିଶା ଲେଖିକା ସଂସଦ ଏ/୧୦୩ - ଶହୀଦନଗର*



# କୁନ୍ତଳାଙ୍କ ଉପନ୍ୟାସରେ ନାରୀ ପରମ୍ପରା ଓ ପୁରୋଦୃଷ୍ଟି

ଡ଼ଃ ରଂଜିତା ନାୟକ

"କ୍ଷୁଦ୍ର ମୁହିଁ ଦୀନ ମୁହିଁ ରେଣୁକଣା ଜଗତେ
ଚାହିଁଲେ ବିଶାଳ ବିଶ୍ୱ ଆସୁଛି କି ପରତେ
କ୍ଷୁଦ୍ରହେଲେ ସୁଧା ମୁହିଁ ଅକାରଣେ ଜନ୍ମିନାହିଁ
ଅନନ୍ତ ବିନାଶ ମୋର ଲେଖାନାହିଁ କପାଳେ
ଏକାରାତି ପାଇଁ ଫୁଟି ଝରିଯିବି ସକାଳେ ।
ଶେଷରତି ନୁହେଁ ମୋର ମୃତ୍ୟୁ କେଉଁ କାଳରେ
ମରିବାକୁ ଫୁଟି ନାହିଁ ଭବତରୁ ଡ଼ାଳରେ
ଅଛି ରମ୍ୟ ଉପବନ ଯହିଁ ଫୁଟି ଚିରଦିନ
ଅନନ୍ତ ଅମୃତ ପ୍ରେମ ସୁଧାମୟ ସୁବାସେ
ମୋହିବି ମୋ ପ୍ରାଣପ୍ରିୟ ଦେବତାକୁ ଉଲ୍ଲାସ" ।

- *'ଶେଫାଳି ପ୍ରତି'*

ବିନ୍ଦୁରେ ସିନ୍ଧୁ ଦର୍ଶନ କଲାପରି ଉତ୍କଳଭାରତୀ କୁନ୍ତଳାକୁମାରୀଙ୍କ କବି ଜୀବନର ସଫଳ ଫଳଶ୍ରୁତି 'ଶେଫାଳିପ୍ରତି' କବିତାର ଉପରୋକ୍ତ ପଂକ୍ତିଦ୍ୱୟରୁ ସ୍ରଷ୍ଟା ପଣକୁ ଚିହ୍ନିହୁଏ, ତାଙ୍କ ଜୀବନ ଦର୍ଶନକୁ ଅନୁଭବି ହୁଏ । ଜୀବନରୁ ଜୀବନକୁ ତାଙ୍କର ଗତି, ଭୂମିରୁ ଭୂମାକୁ ଦୃଷ୍ଟି । ଅସାଧାରଣ ଧୀଶକ୍ତି ସମ୍ପନ୍ନା, ଗଭୀର ଆତ୍ମବିଶ୍ୱାସରେ ଭରପୂର ଏକ ପୂର୍ଣ୍ଣଗର୍ଭା ବ୍ୟକ୍ତିତ୍ୱ ।

୧୯୦୦ରୁ ୧୯୩୮ ମସିହା ଏକ ସୀମିତ ଜୀବନକାଳ । ଏହି ସ୍ୱଳ୍ପ ସମୟ ମଧ୍ୟରେ ଦ୍ରଷ୍ଟା କୁନ୍ତଳାକୁମାରୀ ଜୀବନର ବିପୁଳ ତଥା ବିଚିତ୍ର ଅନୁଭୂତିକୁ ପୁଞ୍ଜିକରି ଯେଉଁକେତୋଟି ଉପନ୍ୟାସ ଓଡ଼ିଆ ସାରସ୍ୱତ ଜଗତକୁ ଦାନକରିଗଲେ, ସମଗ୍ର ଓଡ଼ିଆ ସାହିତ୍ୟରେ ହୁଏତ ଆଉ କୌଣସି ସ୍ରଷ୍ଟା ସେପରି କରିନାହାଁନ୍ତି । ତାର କାରଣ ଅନୁଭବଠାରୁ ଅନୁଭୂତିର ସାମ୍ରାଜ୍ୟ ଅନେକଦୂର ଆଉ ଏହି ସୁଦୂର ସାମ୍ରାଜ୍ୟର ଜଣେ ଶ୍ରେଷ୍ଠ ସାମ୍ରାଜ୍ଞୀ ହେଉଛନ୍ତି କୁନ୍ତଳାକୁମାରୀ ସାବତ ।

୧୯୦୦ ମସିହା ଫେବ୍ରୁୟାରୀ ୮ ତାରିଖରେ, ଓଡ଼ିଶା ବାହାରେ ବସ୍ତର ଷ୍ଟେଟରେ ଏକ ଖ୍ରୀଷ୍ଟିଆନ ପରିବାରରେ କୁନ୍ତଳାକୁମାରୀଙ୍କର ଜନ୍ମ । ଓଡ଼ିଶାଠାରୁ ବହୁଦୂରରେ, ସୁଦୂର ବର୍ମାରେ ୧୪ ବର୍ଷଯାଏ ସେ ପ୍ରତିପାଳିତ । ଯେଉଁଠି ଓଡ଼ିଆ ଭାଷାରେ ଶିକ୍ଷାତ ଦୂରର କଥା, ଓଡ଼ିଆରେ କଥାବାର୍ତ୍ତା ହେବା ପାଇଁ ମଧ୍ୟ ସୁଯୋଗର ଘୋର ଅଭାବ । କେବଳ ପରିବାର ଭିତରେ ମାଆ ଓ ଭାଇ ଭଉଣୀଙ୍କ ଭିତରେ ଓଡ଼ିଆରେ ଯେତିକି କଥାବାର୍ତ୍ତା । ବର୍ମାରୁ ଫେରି ଓଡ଼ିଶାରେ ୧୪ବର୍ଷ ଯାଏ ଅବସ୍ଥାନ, ଏବଂ ପରବର୍ତ୍ତୀ ଦଶବର୍ଷ ମହାନଗରୀ ଦିଲ୍ଲୀରେ କର୍ମସଂସ୍ଥାନ । ବାଲ୍ୟାବସ୍ଥାରୁ

ଆର୍ଥୀକ ଅନାଟନ, ଯୌବନରେ ପ୍ରେମପ୍ରଣୟ ଜନିତ ହତାଶାବୋଧ, ପ୍ରତାରଣା ଓ ଉପେକ୍ଷା ବାହାରକୁ ଖଣ୍ଡଖଣ୍ଡ ଦେଖାଗଲେ ବି ସାମଗ୍ରିକ ଭାବରେ ଏକ ଅଖଣ୍ଡ ଆତ୍ମିକ ଅଭିଜ୍ଞତା ।

ଓଡ଼ିଶାର ଏହି ସ୍ୱଳ୍ପ ରହଣିକାଳ ମଧ୍ୟରେ ସେ ଓଡ଼ିଶାର ଶିକ୍ଷା, ସଭ୍ୟତା, ସଂସ୍କୃତି ଓ ପାଣିପାଗ ସହିତ ଓତପ୍ରୋତ ଭାବେ ଜଡ଼ିତ ହୋଇଛନ୍ତି । ପୁନଶ୍ଚ ଡ଼ାକ୍ତରୀଥିଲା ତାଙ୍କର ଜୀବିକା । ଜନସେବା ଥିଲା ଜୀବନର ପରମବ୍ରତ । ଏହି ପରିପ୍ରେକ୍ଷୀରେ ସମାଜର ନିମ୍ନ ଶ୍ରେଣୀଠାରୁ ଆରମ୍ଭକରି ତଥାକଥିତ ସମ୍ଭ୍ରାନ୍ତ ଶ୍ରେଣୀଯାଏ ଜନଜୀବନର ଗଭୀର ସଂସ୍ପର୍ଶରେ ସେ ଆସିଥିଲେ । ଜୀବନର ଯାତ୍ରାପଥରେ ବିବିଧ ଘଟଣା ଓ ବିବିଧ ଚରିତ୍ର ସ୍ରଷ୍ଟା ପ୍ରାଣକୁ ଭିନ୍ନ ଭିନ୍ନ ଭାବରେ ଆଲୋଡ଼ିତ କରିଥିବ ଏବଂ ଅବଚେତନ ସ୍ତରରେ ସ୍ମୃତିହୋଇ ରହିଥିବ ନିଶ୍ଚୟ । କିଛିଦିନପରେ ଅନୁଭୂତିର ଏହି କମ୍ପୋଷ୍ଟ ଖତ ସ୍ରଷ୍ଟାର ରକ୍ତରେ ମିଶି ଏକାକାର ହୋଇଯାଇଥିବ ।

କୁନ୍ତଳାକୁମାରୀ ସମାଜସଚେତନ ଶିଳ୍ପୀ । ଜୀବନର ବିଚିତ୍ର ବିବିଧ ତଥା ଅନୁଭୂତିରେ କଳ୍ପନାର ପୁଟଦେଇ ସେ ସୃଷ୍ଟିକଲେ 'ଭ୍ରାନ୍ତି', 'ନଅତୁଣ୍ଡୀ', 'କାଳିବୋହୂ', 'ପରଶମଣି', 'ରଘୁଅରକ୍ଷିତ' ଆଦି ଉପନ୍ୟାସ ସମୂହ । ତାଙ୍କ ପୂର୍ବରୁ ଉପନ୍ୟାସରେ ସମାଜର ରୂପ ପ୍ରକଟିତ ହୋଇନଥିଲା ତାହା ନୁହେଁ, କଥାଶିଳ୍ପୀ ଫକୀରମୋହନ ଓ ଚିନ୍ତାମଣି ଆଦି ଔପନ୍ୟାସିକ ଓଡ଼ିଆ ଜନଜୀବନର ଛବିକୁ ନିଜସ୍ୱ ସୃଷ୍ଟିରେ ରୂପାୟିତ କରିଥିଲେ । ମାତ୍ର ସେମାନଙ୍କ ଉପନ୍ୟାସରେ ମୁଖ୍ୟତଃ ସମାଜର ନିମ୍ନଶ୍ରେଣୀ ଓ ସମ୍ଭ୍ରାନ୍ତ ଶ୍ରେଣୀର ଜୀବନ ଚିତ୍ର ଉତ୍‌କୀର୍ଣ୍ଣ ହୋଇଥିଲା । ମଧ୍ୟବିତ୍ତ ଗୋଷ୍ଠିର ଜୀବନ ଚିତ୍ରର ଅନୁପସ୍ଥିତିକୁ ଅନୁଭବ କରି କୁନ୍ତଳାକୁମାରୀ ସେହି ଦିଗରେ ଲେଖନୀ ଚାଳନା କଲେ । ଯାହାଫଳରେ ମଧ୍ୟବିତ୍ତ ଗୋଷ୍ଠିର ସମ୍ୟକ୍ ଜୀବନ ଚିତ୍ର ତାଙ୍କ ଉପନ୍ୟାସରେ କଳାତ୍ମକ ରୂପନେଲା ।

ଖୋର୍ଦ୍ଧାରେ ରହଣିକାଳରେ ସେ ଓଡ଼ିଆ ଘରର ଝିଅ ବୋହୂମାନଙ୍କ ଗଭୀର ସଂସ୍ପର୍ଶରେ ଆସିଥିଲେ । କାହା ସହିତ ବଉଳ କାହାସହିତ ମକର ଓ କାହା ସହିତ ସଙ୍ଗାତବସି ସେ ହିନ୍ଦୁନାରୀର ସୁଖଦୁଃଖଭରା ଜୀବନକୁ ଅନୁଭବିଥିଲେ, ତା ଓଠରେ ହସ ଓ ଆଖିର ଲୁହକୁ ନିରୀକ୍ଷଣ କରିଥିଲେ । ହିନ୍ଦୁନାରୀର ମହତ୍ତ୍ୱକୁ ଅଧ୍ୟୟନ କରିଥିଲେ । ପୁଣି ନାରୀର ଶତ୍ରୁ ପୁରୁଷ ନୁହେଁ, ନାରୀର ଶତ୍ରୁ ନାରୀ ବୋଲି ସେ ଆବିଷ୍କାର କରିଥିଲେ । ଏହିସବୁକୁ ପୁଞ୍ଜିକରି ଓଡ଼ିଆ ନାରୀର ଜୀବନ ଚିତ୍ରକୁ ପ୍ରକଟିତ କରିବା ପାଇଁ କୁନ୍ତଳାକୁମାରୀ ଲେଖନୀଚାଳନା କଲେ । ବିଶେଷତଃ ସମାଜନୀତିରେ ଅସହାୟ ନାରୀର କରୁଣଜୀବନ କାହାଣୀକୁ ପରିବେଷଣ କରିବାକୁ ସେ ସଂକଳ୍ପବଦ୍ଧ ହେଲେ ।

କୁନ୍ତଳା କୁମାରୀ ସଂସ୍କାରପ୍ରୟାସୀ ଶିଳ୍ପୀ । ସମାଜରେ ବସାବାନ୍ଧିଥିବା ଅନ୍ଧବିଶ୍ୱାସ ଓ କୁସଂସ୍କାର ତାଙ୍କ ହୃଦୟରେ ଦାରୁଣ ଯନ୍ତ୍ରଣା ସୃଷ୍ଟିକରିଥିଲା । ତେଣୁ ପୁରାତନ ସମାଜକୁ ସଂସ୍କୃତ ମାର୍ଜିତକରି ଏକ ସୁସ୍ଥସୁନ୍ଦର ସମାଜଗଠନର ପରିକଳ୍ପନା ସେ କରିଛନ୍ତି । ସମାଜର କେନ୍ଦ୍ରବିନ୍ଦୁ ନାରୀ, ଏହି ନାରୀ ସମାଜର ବିବିଧ ସମସ୍ୟା ଯଥା- ବାଲ୍ୟବିବାହ, ନାରୀଶିକ୍ଷା, ବିଧବାସମସ୍ୟା ପ୍ରଭୃତି ଯାଇନି । ସୁତରାଂ ସମାଜ ନୀତିରେ ଅସହାୟା ପତିତା ଏହି ସମାଜକୁ ସେ ତାଙ୍କ ଉପନ୍ୟାସରେ କଳାତ୍ମକ ରୂପ ପ୍ରଦାନ କରିଛନ୍ତି । ସେହି ସମୟରେ ସମାଜର ଏହିସବୁ ସମସ୍ୟା ସାହିତ୍ୟଭିତରେ

ଯେ ପ୍ରକଟିତ ହୋଇନାହିଁ ତାହା ନୁହେଁ, ନନ୍ଦକିଶୋରଙ୍କ 'କନକଲତା' ଉପନ୍ୟାସରେ ଉମା, କାହ୍ନୁଚରଣଙ୍କ ଶାନ୍ତି ଉପନ୍ୟାସର ଧୋବୀ ଏବଂ ଗୋଦାବରୀଶ ମହାପାତ୍ରଙ୍କ 'ବିଦ୍ରୋହୀ' ଉପନ୍ୟାସର ରମା ଓ ଗଉରୀ ସଭିଏଁ ଏହି ପର୍ଯ୍ୟାୟଭୁକ୍ତ । ସମାଜର କାଉଜା କଟଣା ଓ ନୀତିନିୟମ ଘେରରେ ଏମାନେ ଅସହାୟ । ସମାଜପତି ମାନେ ହିଁ ଏମାନଙ୍କ ଦୁଃଖର କାରଣ । ସମାଜ ହାତରେ ଏମାନେ କ୍ରୀଡ଼ନକ, ସେମାନଙ୍କ ହୃଦୟର ବେଦନା ବୁଝିବାକୁ ବା ମନକଥା ଶୁଣିବାକୁ କେହିକେବେ ଚେଷ୍ଟାକରିନି । କେବଳ ନୀତିନିୟମର ଜାଲରେ ଛନ୍ଦିହୋଇ ହାହୁତାଶରେ ସମୟ ଅତିବାହିତ କରିଛନ୍ତି । ସାମାଜିକ ପ୍ରଥା ଓ ନୀତିନିୟମ ବିରୋଧରେ ଏମାନଙ୍କ ମନ ଯେ ଝଗଡ଼ି ଉଠିନାହିଁ ତାହା ନୁହେଁ; ମାତ୍ର ସବୁ ବିଦ୍ରୋହ ଲୁଚିଛପି ଯାଉଛି, ସମାଜରୂପକ ପଥରର ଦାରୁଣଚାପରେ ଏମାନଙ୍କ ସ୍ୱର ମିଳେଇ ଯାଉଛି ଏମାଟିର ପାଣିପବନରେ । ସେଥିପାଇଁ ନନ୍ଦକିଶୋର ଉମାକୁ ବିସୂଚିକା ରୋଗଗ୍ରସ୍ତା କରି ମାରିପକାଇଲେ । କାହ୍ନୁଚରଣ ଧୋବୀକୁ ମୂକ କରିଦେଲେ । ଠାକୁର ପାଖରେ ମୁଣ୍ଡବାଡ଼େଇ ସେ କହିଲା - ''ମୋତେ ପଥର କର, ମୂକ ଅଥର୍ବକର ପ୍ରଭୁ ଠିକ୍ ତୁମରି ପରି । ୧୯୩୮ ମସିହାରେ ଗୋଦାବରୀଶ ମହାପାତ୍ର ଆଉଟିକିଏ ଆଗକୁଯାଇ ସଂସ୍କାର କାମୀ ଯୁବକ ବ୍ରଜ ଓ ତା'ର ମାଆ ପଛରେ, ସମାଜରେ ପୂରି ରହିଥିବା କୁସଂସ୍କାର ବିରୁଦ୍ଧରେ ବିପ୍ଳବର ସ୍ଲୋଗାନ ଦେଇ ଛାଡ଼ିଦେଲେ ରମା ଓ ଗଉରୀକୁ । ଏମାନେ ପ୍ରତ୍ୟେକ ସାମାଜିକ ସମସ୍ୟାଗୁଡ଼ିକୁ ଉପସ୍ଥାପନ କଲେ ଏବଂ ତାର ସମାଧାନ ନ୍ୟସ୍ତକଲେ ସଚେତନ ପାଠକଗୋଷ୍ଠୀ ଉପରେ ।

ମାତ୍ର କୁନ୍ତଳାକୁମାରୀଙ୍କ ଦୃଷ୍ଟିଭଙ୍ଗୀ ଭିନ୍ନ ଥିଲା । 'କାଳିବୋହୂ' ଉପନ୍ୟାସରେ ସେ ଧନୀ ଅଚ୍ୟୁତମିଶ୍ରଙ୍କର ଏକମାତ୍ର କନ୍ୟା ଲକ୍ଷ୍ମୀକୁ ସୃଷ୍ଟିକଲେ । ସାତବର୍ଷ ବୟସରେ ତାର ବିବାହ । ଦଶ ବର୍ଷ ବୟସରେ ସ୍ୱାମୀ ସହିତ ପରିଚୟ ହେବାପୂର୍ବରୁ ବୈଧବ୍ୟ । ସଂସାରର ସକଳ ସୁଖ ତାପାଇଁ ମନା ହୋଇଗଲା । ଦେହରୁ ଅଳଙ୍କାର ସବୁ କାଢ଼ିନିଆଯାଇ ତାକୁ ନିରାଭରଣା କରିଦିଆଗଲା । ସେ କିଛି ବୁଝିପାରିଲା ନାହିଁ । ଓଷାବ୍ରତ, ଏକାଦଶୀ ମଧ୍ୟରେ ତା ଜୀବନକୁ ସୀମିତ କରି ଦିଆଗଲା । ପୁଣି ନିର୍ଜଳା ଏକାଦଶୀ । ବୈଶାଖମାସର ଦ୍ୱିପ୍ରହର ଖରାରେ ତଣ୍ଟିଶୁଖି ଅଠା ହୋଇଗଲା ବେଳେ ସେ 'ପାଣି', 'ପାଣି' ବୋଲି ଚିତ୍କାର ଛାଡିଲେ ବି ତା ପାଟିରେ ଟୋପାଏ ପାଣି ଦିଆଗଲା ନାହିଁ । କାନବାଟେ କେଇବୁନ୍ଦା ପାଣି ପକେଇ ତଣ୍ଟି ଓଦାକରି ଦିଆଗଲା । ଲକ୍ଷ୍ମୀମନରେ ଅନେକ ପ୍ରଶ୍ନ, କିଏ ଗଢ଼ିଲା ଏ ଏକାଦଶୀ ? କି ପାପ କରିଥିଲା ସେ ? କିମ୍ପାଇ ସଂସାରର ସମଗ୍ର ସୁଖ ତା'ପାଇଁ ମନା ? ସଂଜ ଯାଇ ରାତିହୁଏ । ଦିନ ପରେ ଦିନ ବିତେ, ହେଲେ ଏ ପ୍ରଶ୍ନର ସଠିକ ଉତ୍ତର ସେ ଖୋଜି ପାଏ ନାହିଁ ।

ପୁନଶ୍ଚ ପିତାଙ୍କର ମୃତ୍ୟୁପରେ ଲକ୍ଷ୍ମୀ ଆହୁରି ଅସହାୟା ହୋଇଉଠିଛି । ଏକେତ ଯୌବନ, ଦ୍ୱିତୀୟତଃ ବିପୁଳ ଧନ - ଏ ସବୁ ଭିତରେ ତାର ଅବସ୍ଥା ଶୋଚନୀୟ ହୋଇଉଠିଛି । ସହାୟତା ପାଇଁ ଅନେକ ଲୋକ ଆଗେଇ ଆସିଛନ୍ତି ହେଲେ ବ୍ୟକ୍ତି ତଥା ସମାଜର ପୂତିଗନ୍ଧମୟ ରୂପକୁ ସେ ଅଚିରେ ଆବିଷ୍କାର କରିଛି । ପଦେ ପଦେ ଶଙ୍କିତା ଲକ୍ଷ୍ମୀ ସନ୍ନ୍ୟାସିନୀ ହୋଇ ଶାନ୍ତି ଲାଭ ଆଶାରେ

ବୃନ୍ଦାବନ ଯାତ୍ରା କରିଛି । ମାତ୍ର ସେଠାରେ ମଧ ତାର ଅଭିଳାଷ ପୂର୍ଣ୍ଣ ହୋଇନାହିଁ । ସେଠି ମଧ ସମାଜର ସେହି ବିକୃତରୂପ ତାର ଦୃଷ୍ଟି ଗୋଚରେ ହୋଇଛି । ଲକ୍ଷ୍ମୀ ଜୀବନ ରାହା ଖୋଜିପାଇନାହିଁ । ଦିନେ ସଂଜରେ ଯମୁନାକୂଳରେ ବସି ସେ ତାର ଅତୀତ ଓ ବର୍ତ୍ତମାନକୁ ସମୀକ୍ଷା କରିଛି । ଭବିଷ୍ୟତ ତାକୁ ଅନ୍ଧାର ଦିଶିଛି । ତା ପାଇଁ ମୃତ୍ୟୁ ହିଁ ଏକମାତ୍ର ପଥ ଭାବି ସେ ଯମୁନା ଜଳରେ ଝାସ ଦେଇଛି ।

ଚମକି ପଡ଼ିଛନ୍ତି କୁନ୍ତଳା କୁମାରୀ । ଥରି ଉଠିଛି ହାତରେ ଲେଖନୀ । ବାହୁନି ଉଠିଛି କୁନ୍ତଳାଙ୍କ ସଂସ୍କାର ପ୍ରୟାସୀ ମନ । ଅନ୍ତରରୁ ସ୍ୱତଃ ନିସୃତ ହୋଇଛି - ''ମରିବାକୁ ଫୁଟିନାହିଁ ଭବତରୁ ତାଳରେ' । ଦରଫୁଟା କଢ଼ିଟିକୁ ମୋଡ଼ିମକଚି ହାତରେ ଛିଣ୍ଡାଇ ଫୋପାଡ଼ି ଦେବାକୁ ତାଙ୍କର ମନତାକିନି । ତା' ଭିତରର ଅନେକ ସମ୍ଭାବନାକୁ ସେ ଲକ୍ଷ୍ୟ କରିଛନ୍ତି । ଲକ୍ଷ୍ମୀକୁ ନେଇ ଏକ ସୁନ୍ଦର ସୃଷ୍ଟିର ପରିକଳ୍ପନା ଭିତରେ ସେ ମଜ୍ଜିଯାଇଛନ୍ତି । ତେଣୁ ସେହି ଘନ ଅନ୍ଧକାର ରାତ୍ରିରେ, ଯମୁନାର ଅଥଳ ନୀଳ ଜଳରାଶି ଭିତରେ ସେ ଲକ୍ଷ୍ମୀର ଜୀବନ ଦୀପକୁ ଲିଭାଇ ପାରି ନାହାଁନ୍ତି । ମୂର୍ଚ୍ଛିତା ଲକ୍ଷ୍ମୀକୁ ଯମୁନା ଜଳରୁ ଛାଣି ଆଣିଛନ୍ତି ପଣ୍ଡିତ ସଦାନନ୍ଦ ଓ ଉପଯୁକ୍ତ ସେବା ଶୁଶ୍ରୁଷାକରି ତାକୁ ବଞ୍ଚାଇଛନ୍ତି । ଲକ୍ଷ୍ମୀର ନବଜନ୍ମ ହୋଇଛି । ଆଶ୍ରମରେ ରହି ଶାନ୍ତିଲତାଙ୍କ ସହାୟତାରେ ସେ ପାଠପଢ଼ିଛି । ତାର ଆଖି ଖୋଲିଯାଇଛି । ସେ ଜୀବନର ପ୍ରକୃତଅର୍ଥ ବୁଝିଛି । ଜୀବନ ବ୍ୟର୍ଥନୁହେଁ । ଅସାର ନୁହେଁ, ସୃଷ୍ଟିର ପଶ୍ଚାତ୍‌ରେ ଈଶ୍ୱରଙ୍କର ମହତ୍ ଉଦ୍ଦେଶ୍ୟ ନିହିତ - ଏତିକି ଜାଣିଗଲାପରେ ଏ ସୃଷ୍ଟିକୁ ସେ ଅମୃତମୟ ମଣିଛି । ଚତୁର୍ଦ୍ଦିଗ ତାକୁ ସୁନ୍ଦର ଦିଶିଛି । ଅନ୍ୟମାନଙ୍କର ସେବା କରି ସେ ପରମଆନନ୍ଦ ଲାଭକରିଛି ।

ଲକ୍ଷ୍ମୀ ସନ୍ତୁଷ୍ଟ ହୋଇଛି ସତ, କିନ୍ତୁ ତାର ସ୍ରଷ୍ଟା କୁନ୍ତଳାକୁମାରୀ ଏତିକିରେ ତୁଷ୍ଟ ହୋଇପାରି ନାହାଁନ୍ତି । ଥରେ ଲକ୍ଷ୍ମୀକୁ ଦେଖିଛନ୍ତିତ ଥରେ ସମାଜ ଉପରେ ଦୃଷ୍ଟିପାତ କରିଛନ୍ତି । ଜୀବନ ପାଇଁ ଜୀବନର ଆବଶ୍ୟକତା ଯେ ଅନେକ ବେଶୀ, ତାହା ସେ ମର୍ମେ ମର୍ମେ ଅନୁଭବ କରିଛନ୍ତି । ସେଥିପାଇଁ ଲକ୍ଷ୍ମୀକୁ ତାର ସମାଜିକ ମର୍ଯ୍ୟାଦା, ସମାଜିକ ସ୍ୱୀକୃତି ଓ ସର୍ବୋପରି ସାମାଜିକ ଅଧିକାର ପ୍ରଦାନ କରିବାକୁ ସେ ଆଗେଇ ଆସିଛନ୍ତି । ସଂସ୍କାରକାମୀ ପୁରୁଷ ଚନ୍ଦ୍ରୋଦୟ ସାଥିରେ ସେ ଲକ୍ଷ୍ମୀର ବିବାହ କାର୍ଯ୍ୟ ସମ୍ପନ୍ନ କରିଛନ୍ତି । ବାଲ୍ୟବିଧବା ଲକ୍ଷ୍ମୀ ଜାୟା ଓ ଜନନୀ ହୋଇ ସୁଖରେ ସଂସାର କରିଛି ।

ଉପନ୍ୟାସର ଗଠନକୌଶଳ ଦୃଷ୍ଟିରୁ 'କାଳିବୋହୂ' ଉପନ୍ୟାସ ତ୍ରୁଟିପୂର୍ଣ୍ଣ - ଏହା ସର୍ବବାଦୀ ସମ୍ମତ । ତେବେ କୁନ୍ତଳା କୁମାରୀ ଏପରି କଲେ କାହିଁକି ? ଏ ତ୍ରୁଟି ତାଙ୍କ ଜ୍ଞାତରେ ନା ଅଜ୍ଞାତରେ / କୁନ୍ତଳାଙ୍କ ଦୃଷ୍ଟିରେ 'କଳା ପାଇଁ କଳାର ସୃଷ୍ଟି' ନୁହେଁ । ଜୀବନ ପାଇଁ କଳାର ସୃଷ୍ଟି । ସୁତରାଂ ସେ କାଳିବୋହୂକୁ ଯମୁନା ଜଳରେ ଫିଙ୍ଗି ସେହି ଉପନ୍ୟାସର ପରିସମାପ୍ତି ଘଟାଇଲେ ନାହିଁ । ଯେଉଁ ସମାଜପାଇଁ ସେ ଲେଖନୀଚାଳନା କରିଛନ୍ତି ସେହି ଜନସମାଜକୁ ସେ କାଳିବୋହୂର ପୁନଃଜୀବନ ପ୍ରାପ୍ତିକୁ ଦେଖାଇ ବାଲ୍ୟବିଧବାମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ସରଣୀ ପ୍ରସ୍ତୁତ କରି ଦେଇଛନ୍ତି । କାରଣ, କେବେ ଗୁଡ଼ି ଉଡାଇ ନଥିବା ପିଲାଟି ହାତରେ ନଟେଇ ସୂତା ଓ ଗୁଡ଼ି ଧରାଇଦେଇ ତାକୁ ଉଡେଇବାର କୌଶଳ ନଶିଖାଇ ଆମେ ଯଦି ନୀଳଆକାଶକୁ ଚାହିଁ ଗୁଡ଼ିର ଅନ୍ୱେଷଣ କରିବା, 'କେମିତି ଉଡୁଛି

ଗୁଡ଼ି,' ତେବେ ଆମର ଉଦ୍ଦେଶ୍ୟ ବୃଥାହେବ ନିଶ୍ଚୟ । ଠିକ୍ ସେହିପରି ବିଂଶ ଶତାବ୍ଦୀର ଦ୍ୱିଦଶନ୍ଧି ବେଳକୁ ରୀତି ସାହିତ୍ୟର ପ୍ରଭାବ ସଂପୂର୍ଣ୍ଣରୂପେ ସମାଜରୁ ବିଦୂରିତ ହୋଇନଥାଏ । ସାଧାରଣ ଜନତା ଶିକ୍ଷାଲାଭରୁ ବଞ୍ଚିତ ହୋଇ ଆଧୁନିକ ଶିକ୍ଷା, ସଭ୍ୟତା ଓ ଚିନ୍ତାଧାରାର ବହୁ ଦୂରରେ ଥାଆନ୍ତି । କେବଳ ତାଙ୍କରି ଭାଷାରେ ତାଙ୍କ କଥା କହୁଥିବା ଗଳ୍ପ ଉପନ୍ୟାସ ପାଠକରି ମୋହିତ ହେଉଥାନ୍ତି । ସେ ସବୁକୁ ମଧ୍ୟ ସମ୍ପୂର୍ଣ୍ଣ ସତ୍ୟ ମଣୁଥାନ୍ତି । ସେଥିପାଇଁ ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ'ର ନାୟକ ରାମଚନ୍ଦ୍ର ମଙ୍ଗରାଜର ମକଦ୍ଦମାର ଯେତେବେଳେ ଶୁଣାଣି ଚାଲିଥାଏ ଏବଂ ତାହା ଧାରାବାହିକ ଭାବେ ପତ୍ରିକାରେ ପ୍ରକାଶ ପାଉଥାଏ ସେତେବେଳେ ତାକୁ ସତଭାବି ତିନିଦିନ ପାଇଁ ଚୁଡ଼ା ଚାଉଳ ବାନ୍ଧି ଲୋକେ ସେହି ମକଦ୍ଦମା ରାଏ ଶୁଣିବାକୁ ମଫସଲରୁ କଟକ କଚେରୀକୁ ଧାଇଁଥିଲେ । ସେହି ଜନସାଧାରଣଙ୍କୁ ଯଦି ବାଲ୍ୟବିଧବାମାନଙ୍କ ଦୁଃଖ ଦୁର୍ଦ୍ଦଶାକୁ କେବଳ ସୂଚେଇ ଦିଆଯାଇଥାନ୍ତା, ତେବେ ସେମାନେ କେବଳ ତୁଣ୍ଡରେ ଆହା, ଚୁ ଚୁ କହି ତୁନି ରହିଥାନ୍ତେ ଓ ଭାବିଥାନ୍ତେ - 'ଏ ସବୁ ସେମାନଙ୍କ ପୂର୍ବଜନ୍ମକୃତ ପାପର ଫଳ' । ଏହି ପାରମ୍ପରିକ ଚିନ୍ତାଧାରାରେ ପରିଚାଳିତ ଜନତା କେବେହେଲେ ସମାଜର ବଳିଷ୍ଠ ନୀତିନିୟମ ଘେରକୁ ଭାଙ୍ଗି ସାହସର ସହିତ ଏହି ସମସ୍ୟାର ସମାଧାନ କରିବାକୁ ଆଗେଇ ଆସି ନ ଥାନ୍ତେ । କୁନ୍ତଳାକୁମାରୀ ଏକଥା ଉତ୍ତମ ରୂପେ ବୁଝୁଥିଲେ । ତେଣୁ କଳାଗତ ତ୍ରୁଟି ସତ୍ତ୍ୱେ ସେ ଉପନ୍ୟାସକୁ ଭିନ୍ନମୁଖୀ କରିଥିବା ମନେହୁଏ ।

ଏହି ପରିପ୍ରେକ୍ଷୀରେ 'ନଅତୁଣ୍ଡୀ' ଉପନ୍ୟାସର ରତନୀ ଚରିତ୍ରଟିକୁ ବିଚାର କରାଯାଇପାରେ । ରତନୀ କୁନ୍ତଳାକୁମାରୀଙ୍କର ଏକ ଅପୂର୍ବ ସୃଷ୍ଟି । ନାରୀର ଯେଉଁ ରୂପ ବାହାରକୁ ଦେଖାଯାଏ । ତାହା ତା'ର ପୂର୍ଣ୍ଣ ବିକଶିତ ରୂପ ନୁହେଁ । ପରିଦୃଶ୍ୟମାନ ରୂପଟି ପୂର୍ଣ୍ଣ ରୂପର ଏକଦେଶମାଂଶ କେବଳ । ତାର ଅନ୍ତରୂପରେ ଅନନ୍ତ ସମ୍ଭାବନାର ବୀଜ ନିହିତ - ଏହା ସେ ଆବିଷ୍କାର କରି ସମଗ୍ର ଜନଜୀବନ ସମ୍ମୁଖରେ ତାକୁ ଉପସ୍ଥାପନ କରିଛନ୍ତି ।

କଳିଆ ଖୋରଣୀ ଚେହ୍ଲେଇର ଝିଅ ରତନୀ । ଫକୀରମୋହନଙ୍କ 'ରାଣ୍ଡିପୁଅ ଅନନ୍ତା' ଗଳ୍ପର ଦେବକୀ ଗଉଡୁଣୀପରି ଚେହେରାଟି ବେଶ୍ ଡଉଲ ଡାଉଲ । ରଙ୍ଗବି ମସିଆ ନୁହେଁ, ଖାଲି ଯାହା ନାକଟିକିଏ ଚେପେଟା । ହେଲେ ଏକଥା କାହା ମୁହଁରେ ପରନ୍ତେନା । ଥରେ ମୁହଁରୁ କାହାର ବାହାରିଲେ କଥା ସରିଲା । ଗାଁଟା କଳିଆରେ ଉଚ୍ଛୁଳି ପଡ଼େ । ହେଲେ ରତନୀ ବଡ କର୍ମଶୀଳା । କୌଣସି କାମରେ ହଟିବାର ନୁହେଁ । ଧାନ ଉଷୁଆଁ କୁଟାଠାରୁ ଆରମ୍ଭକରି କୂଅରୁ ପାଣିକଢ଼ା ନଇପହଁରାରେ ସେ ସମସ୍ତଙ୍କୁ ଜିଣେ ପୁଣି ଖୋରଣୀ ପଣରେ ତହିଁ କି ବଳି । ଦେହରେ ଯେମିତି ଅମାପ ବଳ ମନରେ ସେମିତି ଅସୀମ ସାହସ । ତାପରି ଜବରବୁଙ୍କୁ ଝିଅ କ୍ୱଚିତ ଦେଖାଯାଆନ୍ତି । ଘରେ ପଶିଥିବା ଚୋର ପଛରେ ସେ ଫାର୍ଶାଧରି ଗୋଡାଏ, ଜମିଦାର ମୁହଁରେ ଜବାବ୍ଦିଏ । ଥରେ ଜମିଦାର କୃଷ୍ଣଚନ୍ଦ୍ର ଗାଁ ବୁଲି ବାହାରିଥାନ୍ତି । ଏହି ସମୟରେ ବଟା ହଳଦୀ ଓ ସୋରିଷତେଲ ଗିନାଏ ଧରି କାନ୍ଧିରେ ଗାମୁଛାଖଣ୍ଡେପକାଇ ରତନୀ ଗାଧେଇ ବାହାରିଥାଏ । ପୋଖରୀ ଅଧମାଇଲ ଦୂର । ବାଟରେ ଦାନ୍ତକାଠି ପାଇଁ ଜଗାଙ୍କ ଡାଳଖଣ୍ଡେ ଭାଙ୍ଗୁ ଭାଙ୍ଗୁ ହଠାତ୍ ଦେଖିଲା । ପଞ୍ଚାଏ ଧୋବଧାଉଳିଆ

ଲୋକ ତାଆଡକୁ ମାଡିଆସୁଛନ୍ତି । ଏକେ ମାଇକିନିଆ ଲୋକ, ପୁଣି ମଫସଲିଆଣି । ଲୋକଗୁଡ଼ାକ ଭାବିଥିଲେ ସେମାନଙ୍କୁ ଦେଖି ସେ ବଣବୁଦା ଉହାଡ଼ରେ ଲୁଚିଯିବ । ହେଲେ ରତନୀର ତାଙ୍କୁ ବା କି ଖାତିର । ତାଳ ଭାଙ୍ଗୁ ଭାଙ୍ଗୁ ଥୋଡାଏ ବେକଯାଏ, ତାକୁ ବଲବଲ କରି ଚାହିଁଲା । ସେମାନେ ମଉଜକରିବା ଅଭିପ୍ରାୟରେ ପଦେଅଧେ ଥଟ୍ଟା କରିଦେଲେ । ରତନୀ କି ସମ୍ଭଳା ପଡ଼େ । ଖୁବ୍ ବଡ଼ ପାଟିରେ ସେମାନଙ୍କୁ ବହେ ଶୋଧିଲା । ତା ପାଟି ଶୁଣି ଲୋକେ ଜମା ହୋଇଗଲେ । ତାଙ୍କ ଭିତରୁ ଜଣେ କହିଲା - ''ହଇଲୋ ଆମେ ଜମିଦାର ବାବୁର ପାଖଲୋକ । ଆମକୁ ତୋର ଖାତିର ନାହିଁ ।'' ରତନୀ ଆହୁରି ଉଗ୍ରମୂର୍ତ୍ତି ଧରି କହିଲା - ''ରଖ୍ ତୋ ଜମିଦାର ବାବୁକୁ ତୋ ଘରେ । ମୁଁ ତୋ ଜମିଦାରର ଖାଏ ନା ଧାରେ ; ମୁଁ ସେଇଟାକୁ ଡରିବି କିଆଁ ?

ଯେଉଁ ସମୟରେ ଜମିଦାର ନାଆଁରେ ପୃଥ୍ୱୀ ଥରହର, ପ୍ରଜାଏ ଶତହାତ ଦୂରକୁ କୋଡି ଫୋପାଡିଦେଇ କାଦୁଅବିଲରେ ସାଷ୍ଟାଙ୍ଗ ପ୍ରଣିପାତ କରନ୍ତି, ସେହି ସମୟରେ ଛାର ନାରୀଟାଏ ଦମ୍ଭରେ ଛିଡାହୋଇ ଜମିଦାର ମୁହଁରେ ଜବାବ ଦିଏ - ଏହା କମ୍ ସାହସର କଥା ନୁହେଁ ।

ତେବେ ପ୍ରଶ୍ନଉଠେ ଏହି ସାହାସିନୀ ନାରୀ ଚରିତ୍ରଟିକୁ କେଉଁଠୁ ଆଣିଲେ ଔପନ୍ୟାସିକା କୁନ୍ତଳା କୁମାରୀ ? ନିଶ୍ଚୟ କଳ୍ପଲୋକରୁ ନୁହେଁ । କୁନ୍ତଳାଙ୍କ ପତ୍ରାବଳୀରୁ ଜଣାପଡ଼େ ଖୋର୍ଦ୍ଧାରେ ରହଣିକାଳ ମଧ୍ୟରେ ସେ ହିନ୍ଦୁନାରୀର ଗଭୀର ସଂସ୍ପର୍ଶରେ ଆସିଥିଲେ ଓ ସେମାନଙ୍କ ଗୁଣାବଳୀରେ ମୁଗ୍ଧ ହୋଇଥିଲେ । ଖୋର୍ଦ୍ଧାର ଇତିହାସ ପାଠକରି ପାଇକମାନଙ୍କର ସାହସିକତା ଓ ନିର୍ଭୀକତାରେ ସେ ଚକିତ ହୋଇଥିଲେ । ସୁତରାଂ ଏଇ ନାରୀଚରିତ୍ରଟି ନିଶ୍ଚିତ ଭାବେ ପାଇକ ରମଣୀ, ଯିଏ ସ୍ୱାମୀପୁତ୍ରକୁ ଯୁଦ୍ଧ ବେଶରେ ସଜାଇ ମଥାରେ ବିଜୟତିଳକ ଲଗାଇ ନିର୍ଭୟରେ ଯୁଦ୍ଧକ୍ଷେତ୍ରକୁ ପଠାଏ ଓ ନିଜେ ମଧ୍ୟ ଯୁଦ୍ଧପାଇଁ ପ୍ରସ୍ତୁତ ହୋଇରହେ । ତା ମନରେ ଅଶେଷ ଦମ୍ଭ, ଅମାପ ସାହସ । ନିର୍ଭୀକତାର ମୂର୍ତ୍ତିମନ୍ତ ପ୍ରତୀକ ସେ । ମାତ୍ର ପରବର୍ତ୍ତୀ ସମୟରେ ପାଇକ ଜାତିର ସେହି ବୀରତ୍ୱ ସାହସ, ନିର୍ଭୀକତା କ୍ରମେ ବିଲୁପ୍ତ ହୋଇଛି । ଅଶିକ୍ଷା ଓ କୁସଂସ୍କାରର ବଶବର୍ତ୍ତୀ ହୋଇ ସେ ତାର ପୂର୍ବଗୌରବକୁ ହରାଇ ବିସିଛି । ମାତ୍ର ସଂପୂର୍ଣ୍ଣ ରୂପେ ସେ ଆମ୍ବିସ୍ମୃତ ହୋଇନାହିଁ । ଏହି ନାରୀକୁ ଗଭୀରଭାବେ ନିରୀକ୍ଷଣ କରିଛନ୍ତି କୁନ୍ତଳାକୁମାରୀ ଓ କଳାତ୍ମକ ରୂପ ଦେବାକୁ ଆଗେଇ ଆସିଛନ୍ତି ।

ଗୁଣ ଚିହ୍ନେ ଗୁଣିଆ । ଜମିଦାର କୃଷ୍ଣଚନ୍ଦ୍ର ରତନୀର ଅନ୍ତର୍ଚେତନାକୁ ଆବିଷ୍କାର କରିଛନ୍ତି । ତାର ନିର୍ଭୀକ ପଣକୁ ସ୍ୱାଗତ କରି ତାକୁ ପତ୍ନୀର ଆସନ ଦେଇଛନ୍ତି । ତାର ପାଠପଢ଼ାର ସୁବନ୍ଦୋବସ୍ତ କରିଛନ୍ତି । ସୁଆର ରଖାଇ ଭଲ ରନ୍ଧାବଢ଼ା ଶିଖାଉଛନ୍ତି । ସିଲେଇ ଓ ସୂତାକଟା ଶିଖାଇଛନ୍ତି । ସବୁବିଷୟରେ ରତନୀ ସ୍ୱଳ୍ପସମୟ ମଧ୍ୟରେ ଦକ୍ଷତା ହାସଲ କରିଛି । ସୁପ୍ତବୀଜ ଉପରେ ସତେ ଯେମିତି ପଥରଖଣ୍ଡେ ଚାପା ପଡିଥିଲା । ପଥର ଖଣ୍ଡିକୁ ଉଠାଇନେବାରୁ ଉପଯୁକ୍ତ ଆଲୁଅ ପବନ ପାଇ ବୀଜଟିର ସୁସ୍ଥ ଅଙ୍କୁରୋଦଗମ୍ ଘଟିଲା ପରି କଳିଆଖୋରଣୀ ରତନୀ ସତ୍‌ଶିକ୍ଷା ପାଇ ମଙ୍ଗଳମୟୀ ରତ୍ନାବତୀକୁ ଉନ୍ନୀତ ହୋଇଛି । ଘରର ଚାରିକାନ୍ଥଭିତରେ ସେ ଆଉ ଆବଦ୍ଧ ହୋଇ ରହିନାହିଁ । ସେ ବିଶ୍ୱମୁଖୀ ହୋଇଛି । ବାହାରକୁ ଗୋଡକାଢ଼ି ପ୍ରଜାଙ୍କର ସୁଖ-ଦୁଃଖ ବୁଝିଛି । ସମୟର

ସଦୁପଯୋଗ କରିବାକୁ ସେ ଧନୀଘରର ଝିଅବୋହୂଙ୍କୁ ଉପଦେଶ ଦେଇଛି । କାଟିପିନ୍ଧ କୁଟିଖାଅ' ମନ୍ତ୍ରରେ ସେ ନାରୀସମାଜକୁ ଦୀକ୍ଷିତା କରିଛି । ସ୍ୱାମୀ କୃଷ୍ଣଚନ୍ଦ୍ରଙ୍କ ଆଦର୍ଶରେ ଅନୁପ୍ରାଣିତା ହୋଇ ସେ ଦେଶସେବା କରିବାକୁ ଆଗେଇ ଆସିଛି ।

ସେହପରି 'ରଘୁଅରକ୍ଷିତ' ଉପନ୍ୟାସର ସୀତା ସମାଜ ନୀତିରେ କେତେ ଅସହାୟ ସତେ ! କୁନ୍ତଳାଙ୍କ ତୀକ୍ଷଣ ଦୃଷ୍ଟିରୁବାଦ୍‌ଯାଇନି ଏ ଚରିତ୍ରଟି । ଏତେ ଅସହାୟତା ଭିତରେ ମଧ ସେ ପଥଚ୍ୟୁତ ହୋଇନି । ହିନ୍ଦୁଧର୍ମର ଆଦର୍ଶକୁ ଅକ୍ଷୁର୍ଣ୍ଣ ରଖିବାକୁ ସେ ପ୍ରାଣପଣେ ଉଦ୍ୟମ କରିଛି ।

ଧନୀକ ଚନ୍ଦ୍ରଶେଖର ମିଶ୍ରଙ୍କର କନ୍ୟା ସୀତା ପିଲାଟିଦିନରୁ ଭଲ ପାଇଛି ନିର୍ଧନ ରଘୁନାଥକୁ । ପରବର୍ତ୍ତୀ ସମୟରେ ଏହି ଭଲପାଇବା କ୍ରମେ ପ୍ରେମରେ ପରିଣତ ହୋଇଛି । ଦୁହେଁ ପରସ୍ପରକୁ ବିବାହ କରିବାକୁ ଚାହିଁଛନ୍ତି । ହେଲେ ସୀତାର ପିତା ଅର୍ଥଗୃଧ୍ନ ଚନ୍ଦ୍ରଶେଖର ମିଶ୍ର ଟ ୩,୫୦ କା କନ୍ୟାସୁନା ନେଇ ବୃଦ୍ଧ ଜମିଦାର ସହିତ ସୀତାର ନିର୍ବନ୍ଧ କରିଛି । ମାତ୍ର ବିବାହପୂର୍ବରୁ ସୀତାର ଭାବୀସ୍ୱାମୀ ଇହଲୀଳା ସମ୍ବରଣ କରିଛି । ଲୋକାଚାର ଓ ସାମାଜିକ ନୀତିନିୟମ ଦୃଷ୍ଟିରୁ ସୀତାର ଦୁଃଖ ଦ୍ୱିଗୁଣିତ ହୋଇଛି । ପୁଣି ରଘୁନାଥ ସହିତ ତାର ବିବାହ ପ୍ରସଙ୍ଗ ଉଠିଛି । ହେଲେ ସୀତାର ମନକଥା କେହି ବୁଝିନି, ନା ପିତା ନା ସମାଜ । ସୀତାର ସମସ୍ତ ସୁଖସ୍ୱପ୍ନକୁ ଭାଙ୍ଗିରୁଜି ପୁନଶ୍ଚ ତାର ପିତା ଦୁଇହଜାର ଟଙ୍କା କନ୍ୟା ସୁନା ନେଇ ଚରିତ୍ରହୀନ ନିଶାଖୋର ଜମିଦାର ଦିବାକର ମିଶ୍ର ସହ ତାର ହାତକୁ ଛନ୍ଦି ଦେଇଛନ୍ତି । ଅର୍ଗଳିରେ ଥିବା ବଳିପଶୁପରି ସୀତା ଯନ୍ତ୍ରବତ୍ ସବୁ ଅନୁଷ୍ଠାନ ସମ୍ପନ୍ନ କରିଛି ।

ଶାଶୁଘରେ ସୀତା ସୁଖୀ ହୋଇ ପାରିନି । ରଘୁନାଥର ସ୍ମୃତି ତାକୁ ବିବ୍ରତ କରିଛି । ଜୀବନ ମରୁଭୂମି ପରି ପ୍ରତୀୟମାନ ହୋଇଛି । ସ୍ୱାମୀ ଦିବାକର ମିଶ୍ର ମଧ ସୀତାକୁ ଆପଣାର କରିପାରି ନାହାନ୍ତି । ବରଂ ରାଗ ଓ ଅଭିମାନରେ ସ୍ତ୍ରୀକୁ ବାପଘରକୁ ବିଦାକରି ଦେଇଛନ୍ତି । କିଛି ଦିନକପରେ ଦିବାକର ମିଶ୍ର କୁକର୍ମରେ ଲିପ୍ତଥିବା କଥା ସୀତା କାନରେ ବାଜିଛି । ସୀତାର ଚୈତନ୍ୟୋଦୟ ଘଟିଛି । ତା ମନରେ ଭାବାନ୍ତର ଦେଖାଦେଇଛି । ହିନ୍ଦୁ ସ୍ତ୍ରୀର କର୍ତ୍ତବ୍ୟବୋଧ ତାର ସ୍ମରଣ ହୋଇଛି । ସୀତା ସାବିତ୍ରୀଙ୍କର ଉତ୍ତର ଦାୟାଦ ରୂପେ ସେ ସ୍ୱାମୀର ଧର୍ମ ଓ କର୍ମକୁ ଆପଣାର ମଣିଛି । ବାପଘର ଆଉ ତାକୁ ଭଲ ଲାଗିନାହିଁ । ସ୍ୱାମୀକୁ ସତ୍‌ପଥକୁ ଆଣି ସୁଖର ସଂସାର କରିବାକୁ ସେ ଶାଶୁଘରକୁ ଯାଇଛି । ସୀତା ମାତୃତ୍ୱର ଅଧିକାରିଣୀ ହୋଇଛି । ସୁଖର ସୂର୍ଯ୍ୟୋଦୟ ଘଟିଲାବେଳେ ସେ ସ୍ୱାମୀକୁ ହରାଇଛି ।

ଦୁଃଖ ଓ ହତାଶାରେ ଭାଙ୍ଗିପଡ଼ିଛି । ସୀତା ଜୀବନ ସ୍ୱାଦ ହରାଇଲାପରେ ଜୀବନ ତାକୁ ତୁଚ୍ଛ ଲାଗିଛି । ପଥହରା ରଘୁନାଥ ସୀତାକୁ ଆଶ୍ୱାସନା ଦେଇଛି, ବିଶ୍ୱାସ ଦେଇଛି । ପୂର୍ବସ୍ମୃତିର ରୋମନ୍ଥନ କରି ସେ ସୀତାକୁ ବିବାହ କରିବାକୁ ପ୍ରସ୍ତାବ ମଧ ଦେଇଛି । ରଘୁନାଥ ମୁହଁରୁ କଥା ସରିଲା ପୂର୍ବରୁ ଘାଉଲା ବାଘୁଣୀପରି ଗର୍ଜି ଉଠି ସୀତା କହିଛି - ମୁଁ ସେ ସୀତା ନୁହେଁ, ସେ ସୀତା ତ ଅନେକକାଳୁ ମରିଛି । ମିଶ୍ରବଂଶର ବୋହୂ ମୁଁ - ଅମୂଲ୍ୟ ମୋହନର ମାଆ । ଆଜି ଏ ମୁହୂର୍ତ୍ତରେ ମୋ ସ୍ୱାମୀର

ପବିତ୍ର ମୂର୍ତ୍ତି ମୋ ଆଖି ଆଗରେ । ପାପିଷ୍ଠ ! ଦୂରହୁଅ ଦୂର ହୁଅ ମୋ ଆଖି ଆଗରୁ । ଆଉ କାହାକୁ ବିଭାହୁଅ - ସୀତାକୁ ନୁହେଁ ।

ସ୍ୱାମୀ ପୁତ୍ରଙ୍କୁ ନେଇ ଘର କଲାପରେ ହିନ୍ଦୁନାରୀ ପାଇଁ ତା ସଂସାର ସ୍ୱର୍ଗ ପାଲଟି ଯାଏ । ତା ଜୀବନରେ ଆଉ କିଛି ଅପୂର୍ଣ୍ଣ ରହେ ନାହିଁ । ମହାପ୍ରସାଦ ଭକ୍ଷିବାରେ ଆତ୍ମା ତୃପ୍ତିଲାଭ କଲାପରି ପୂର୍ଣ୍ଣତାର ପ୍ରାପ୍ତିରେ ସେ ଆତ୍ମବିଭୋର ହୁଏ । ସେ ଆଉ ସାଧାରଣ ମାନବୀ ହୋଇ ରହେ ନାହିଁ । ଦେବୀ ହୋଇଯାଏ । କୁନ୍ତଳା ନାରୀ ଚରିତ୍ରର ଏହି ମହନୀୟ ଦିଗଟିକୁ ଉଦ୍‌ଘାଟନ କରି ନିଜସ୍ୱ ସୃଷ୍ଟିରେ ଶ୍ରଦ୍ଧା ପୂର୍ବକ ପରିବେଷଣ କରିଛନ୍ତି ।

କୁନ୍ତଳାଙ୍କର ଅନ୍ୟଏକ ଉପନ୍ୟାସ 'ପରଶମଣି' ଉପନ୍ୟାସର ନାୟିକା ଲଳିତା ବାପାମାଆଙ୍କର ଅଲିଅଳି କନ୍ୟା । ଭଲଘର ଭଲବର ଦେଖି ବାପା ମା' ତାକୁ ବିଭା ଦେଇଛନ୍ତି । ଆଦ୍ୟ ଯୌବନରେ ପାଦ ଦେଉଦେଉ ଲଳିତା ନବବଧୂ ହୋଇ ଶାଶୁଘର ଯିବାକୁ ସଜ ହୋଇଛି । ପ୍ରାଣରେ ନବ ଉନ୍ମାଦନା, ମନରେ ଅସରନ୍ତି ସ୍ୱପ୍ନ । କଳ୍ପନାର ସ୍ରୋତରେ ଭାସିଭାସି ଯାଇ ଲଳିତା ପାଦ ଦେଇଛି ଶାଶୁଘରେ । ମାତ୍ର ବାସ୍ତବତାର ଶିଳାରେ ସବୁସ୍ୱପ୍ନ ତାର ଭାଙ୍ଗି ଚୂରମାର ହୋଇଯାଇଛି । ଶାଶୁଘରର କାଇଦା କଟକଣା ଭିତରେ ବାନ୍ଧିହୋଇ ସେ ଛଟପଟ ହୋଇଛି । ଶାଶୁ ନଣନ୍ଦ ଓ ଯାଆର ଗଞ୍ଜଣାରେ ସରଳ ନାରୀ ଜୀବନର ସମସ୍ତ କୋମଳତା ନଷ୍ଟ ହୋଇ ଯାଇଛି । ନାରୀର ଶତ୍ରୁ ପୁରୁଷ ନୁହେଁ, ନାରୀର ଶତ୍ରୁ ହିଁ ନାରୀ - ଏହା ଲଳିତା ମର୍ମେ ମର୍ମେ ଅନୁଭବ କରିଛି । ଏ ସବୁ ସତ୍ତ୍ୱେ ଅନ୍ଧକାର ଆକାଶରେ ସଞ୍ଜୁଆ ତାରାପରି ଗୋଟିଏ ଆଶା ତା ମନରେ ଦିକିଦିକି ହୋଇ ଜଳୁଛି - ସ୍ୱାମୀ ସୋହାଗ । ମନରେ ଆଶାବାନ୍ଧିଛି , ସ୍ୱାମୀସହ କଟକ ଗଲେ ତା'ର ଦୁଃଖର ଦିନ ଅପସରି ଯିବ । ମାତ୍ର ଲଳିତାର ଆଶା ଆଶାରେ ରହିଯାଇଛି । ଶାଶୁଙ୍କ ପାଇଁ ସେ ସ୍ୱାମୀସହ ଏକାଠି ରହିପାରିନାହିଁ । ସ୍ତ୍ରୀ ଠାରୁ ଦୂରରେ ରହି ସ୍ୱାମୀ ବିମ୍ବାଧର କର୍ମରେ ଲିପ୍ତରହି ଲଳିତାକୁ ଅବହେଳା କରିଛି । ଲଳିତା ଜୀବନରେ ସୁଖସ୍ୱପ୍ନ ଭାଙ୍ଗିଯାଇଛି । ଦାମ୍ପତ୍ୟ ଜୀବନ ହନାହନମୟ ହୋଇଛି । ମନେମନେ ସେ ତା ନାରୀ ଜୀବନକୁ ନିନ୍ଦା କରିଛି - "ସେ ପରା ଝିଅ ! ତା ଭାଗ୍ୟପରା ପଥର ତଳେ । ସତେ ପଥର ଲେଉଟିବ, ତା ଭାଗ୍ୟ ଫେରିବ । ପୁଣି ଭାବିଛି ସେତ ମଣିଷ, ତା ପାଇଁ ମଣିଷ ଏତେ ଦୁଃଖ କିଆଁ ଖଂଜିଲା ?" ଗଭୀର ଦୀର୍ଘଶ୍ୱାସରେ ଲଳିତାର ହୃଦୟ ବିଦୀର୍ଣ୍ଣ ହୋଇଯାଇଛି ।

ସ୍ୱାମୀ ସୋହାଗରୁ ବଞ୍ଚିତା ଲଳିତା ଜୀବନକୁ ଅସାର ମଣିଛି । ତା' ଆଶାର କୁସୁମ ମଉଳି ଯାଉଛି । ଏ ବିରାଟ ଦୁନିଆଁରେ ସେ ନିଜକୁ ଏକାନ୍ତ ଅସହାୟ ମଣିଛି । ତା ଦୁଃଖ ଦୁର୍ଦ୍ଦଶାରେ ଟିକିଏ ସହାନୁଭୂତି ଜଣାଇବାକୁ କେହି ଆଗେଇ ଆସିନାହିଁ । ଦିନରାତି ଦାସୀପରି ଖଟିଖଟି ସେ କାହାରି ମନକିଣି ପାରିନାହିଁ । ଜୀବନଭାର ତାପାଇଁ ଦୁର୍ବିସହ ହୋଇଉଠିଛି । ମୃତ୍ୟୁ ହିଁ ଏକମାତ୍ର ପଥଭାବି ସେହିପଥରେ ସେ ଆଗେଇ ଯାଇଛି । ମାତ୍ର ସେ ମରି ପାରିନାହିଁ । ବାପଘରେ ଆଶ୍ରୟ ନେଇଛି ଲଳିତା । କିଛି ଅଭାବ ହୋଇନି । ସ୍ନେହ, ଆଦର ଯତ୍ନ - ସବୁ ଭିତରେ ମଧ୍ୟ ସେ କିଛି ନ ପାଇବା

ପରି ଅନୁଭବ କରିଛି । ସେଥିପାଇଁ ପତିଭକ୍ତା ଲଳିତା ବାପଘରେ ରହିପାରି ନାହିଁ । ସ୍ୱାମୀ ବିନ୍ଧ୍ୟାଧରଙ୍କ ପାଖକୁ କଟକ ଯାଉଛି । ବହୁଦିନପରେ ସ୍ୱାମୀ ସ୍ତ୍ରୀଙ୍କର ମିଳନ ଘଟିଛି ।

ଲଳିତାର ସୁଖ କାଚଘର ପରି ଭାଙ୍ଗିଯାଇଛି । ରୋଗାକ୍ରାନ୍ତ ସ୍ୱାମୀ ଅସମୟରେ ପ୍ରାଣତ୍ୟାଗ କରିଛନ୍ତି । ଲଳିତା ସଂସାରର ଅସାରତାକୁ ହୃଦୟଙ୍ଗମ କରିଛି । ସୁତରାଂ ତା ମନରେ ସଂସାର ତ୍ୟାଗର ବାସନା ଜାଗ୍ରତ ହୋଇଚି । ସନ୍ନ୍ୟାସିନୀ ହୋଇ ସେ ହରିନାମ କୀର୍ତ୍ତନ କରିଛି । ଶାଶୁ, ନଣନ୍ଦ ଓ ଯାଆଙ୍କୁ ମଧ ସେହି ଅମୃତମୟ ପଥର ସନ୍ଧାନ ଦେଇଛି ।

ଔପନ୍ୟାସିକା କୁନ୍ତଳା କୁମାରୀ ଓଡ଼ିଆ ଘରର ବୋହୂ ଲଳିତାଙ୍କୁ ଦୁଃଖ ଯନ୍ତ୍ରଣାର କଷଟି ପଥରେ ପରଖି ତାକୁ 'ପରଶମଣି' ଆଖ୍ୟା ପ୍ରଦାନ କରିଛନ୍ତି । ଉତ୍କଳୀୟ ସମାଜରେ ବଧୂର ବିପର୍ଯ୍ୟୟଗ୍ରସ୍ତ ଜୀବନକୁ ସେ ଅନ୍ତରଙ୍ଗଭାବେ ପର୍ଯ୍ୟାଲୋଚନ କରି ବଧୂର ମହତ୍ତ୍ୱ କିପରି ଦୟା, କ୍ଷମା ଓ ସହନଶୀଳତା ଉପରେ ପର୍ଯ୍ୟବେସିତ ତାର ନିଛକ ଚିତ୍ର ଲଳିତା ଚରିତ୍ରରେ ପ୍ରକାଶ କରିଛନ୍ତି ।

କୁନ୍ତଳା କୁମାରୀଙ୍କ ଉପନ୍ୟାସରେ ଅଶିକ୍ଷିତ ନାରୀ ସମାଜ ସତ୍‌ଶିକ୍ଷା ଲାଭକରି କ୍ରମ ଉତରଣ ମୁଖୀ । ଲକ୍ଷ୍ମୀ ହେଉ ବା ରତନୀ ହେଉ, ସୀତା ବା ଲଳିତା ହୁଅନ୍ତୁ ସତ୍‌ଶିକ୍ଷାପାଇ ଅନ୍ଧାରରୁ ଆଲୋକ ଆଡକୁ ସେମାନଙ୍କର ଗତି । ମାଟିରୁ ଆକାଶକୁ ସେମାନଙ୍କର ବ୍ୟାପ୍ତି ଓ ସସୀମରୁ ଅସୀମ ଆଡକୁ ସେମାନଙ୍କର ଦୃଷ୍ଟି । ଔପନ୍ୟାସିକା କୁନ୍ତଳାକୁମାରୀଙ୍କ ଲେଖନୀମୂନରେ ଏହି ନାରୀ ଚରିତ୍ର ଗୁଡ଼ିକ ଯେମିତି ବାସ୍ତବ ଓ ଜୀବନ୍ତ ସେହିଭଳି ଅନବଦ୍ୟ ତଥା ଉର୍ଜସ୍ୱଳ ।

*ଅଧ୍ୟାପିକା*
*ଶୈଳବାଳା ମହିଳା କଲେଜ*
*କଟକ - ୧*



# ଓଡ଼ିଶା ଲେଖିକା ସଂସଦର ପ୍ରକାଶିତ ପୁସ୍ତକାବଳୀ

୧. ଭୂମା (ପ୍ରଥମ ଖଣ୍ଡ) - ଗଳ୍ପ ସଙ୍କଳନ

୨. ଭୂମା (ଦ୍ୱିତୀୟ ଖଣ୍ଡ) - ଗଳ୍ପ ସଂକଳନ

୩. ଭୂମି - କବିତା ସଂକଳନ

୪. ସରଳା ଦେବୀ - (ଜୀବନୀ) - ରଚନା : ବନଜ ଦେବୀ

# ବିଂଶୋତ୍ତର ଶତାବ୍ଦୀରେ କୁନ୍ତଳା

ଡ଼. ଇନ୍ଦିରା ପଟ୍ଟନାୟକ

କାଳର କରାଳ ଗର୍ଭରେ ସମସ୍ତେ ବିଲୀନ । ସମୟର ସ୍ରୋତ ଧାରେ ଭାସି ଭାସି ମନୁଷ୍ୟ କେଉଁଠି ଅବା କ୍ଷୀଣ ଆଶ୍ରୟ ଛାୟାତଳେ ମୁଣ୍ଡ ଗୁଞ୍ଜି ଅନ୍ତରର ଅବ୍ୟକ୍ତ ବେଦନା, କୋହ, ସମ୍ଭାଳି ନ ପାରି ବ୍ୟକ୍ତି କରିଯାଉଛି ତାର ଅନୁଭୂତିକୁ ଅଣନିଃଶ୍ୱାସୀ ହୋଇ । ସେ ଚିନ୍ତାରେ ନାହିଁ ଅନୁକମ୍ପା ଅଥବା ସମବେଦନା, କେବଳ ରହିଛି ଜୀବନର ଜର୍ଜରିତ କେତେକ ଅଭୁଲା ଅନୁଭୂତି ଓ ସମାଜ ପାଇଁ ଚେତାବନୀ ।

ମନୁଷ୍ୟ ଅନୁଭୂତିରୁ ଶିକ୍ଷାଲାଭ କରିଥାଏ । ବିଶ୍ୱବିଖ୍ୟାତ ମହାମାନ୍ୟ ଆରିଷ୍ଟଟଲ ମନୁଷ୍ୟକୁ ଏକ ସାମାଜିକ ପ୍ରାଣୀ ରୂପେ ବର୍ଣ୍ଣନା କରିଛନ୍ତି । ସୃଷ୍ଟିର ସୃଷ୍ଟ ସମସ୍ତ ଜୀବଜନ୍ତୁଙ୍କ ମଧ୍ୟରେ ମାନବ ଶ୍ରେଷ୍ଠ ଜୀବ ରୂପେ ପରିଗଣିତ ହେଲେ ମଧ୍ୟ ଏକମାତ୍ର ନିର୍ଭର ଶୀଳ ଜୀବ ଅଟେ । ବାଲ୍ୟ କାଳରେ ସେ ଅନ୍ୟର ସହାୟତା ଉପରେ ନିର୍ଭର କରେ । ପ୍ରକୃତିର ପରିବେଶରୁ ଖାଦ୍ୟ,ଜଳ ଆହରଣ କରିବା ସହ ସମାଜର ବ୍ୟକ୍ତି ବିଶେଷଙ୍କଠାରୁ କଥା କହିବା, ଆଚାର ବ୍ୟବହାର ଶିକ୍ଷା କରିଥାଏ । କିଛି ଅନୁଭୂତି, କିଛି ଉପଦେଶ ଓ ସାମାଜିକ ପରିବେଶ ସମନ୍ୱୟରେ ଶିଶୁର ଅନ୍ତର୍ନିହିତ ଗୁଣାବଳୀ ବିକଶିତ ହୁଏ ଓ ତାହା ପରବର୍ତ୍ତୀ କାଳରେ ଚାରିତ୍ରିକ ଗୁଣର ବିକାଶ ଅଥବା ଚରିତ୍ର ଗଠନର ଆଧାର ହୁଏ ।

ଦୃଢ଼ ଚରିତ୍ର ସମ୍ପନ୍ନ ବ୍ୟକ୍ତି ବିଶେଷଙ୍କ ଅବଦାନରେ ସମାଜ ହୁଏ ଉନ୍ନତ ଓ ସୁଦୃଢ଼ । ''ପରୋପକାରାୟ ସ୍ୱର୍ଗାୟଃ'' ନୀତି ପଥରେ ଉଦ୍‌ଭାସିତ କରେ । ସେମାନଙ୍କ କୃତିହିଁ ସେମାନଙ୍କୁ ସ୍ୱତନ୍ତ୍ର ଆସନର ଅଧିକାର କରିଥାଏ । ମୃତ୍ୟୁର କରାଳଛାୟା ସେମାନଙ୍କୁ ବିସ୍ମୃତି ଗର୍ଭରେ ବିଲୀନ କରିପାରେ ନାହିଁ । ସେମାନଙ୍କ ଅମ୍ଳାନ ତ୍ୟାଗ ଓ ଅବଦାନ ସେମାନଙ୍କୁ କାଳଜୟୀ କରିଥାଏ । ସମ୍ୟକ୍ ଦୃକ୍‌ପାତ କଲେ ତାହା ଉପଲବ୍ଧି କରିପାରିବା ।

ଊନବିଂଶ ଶତକରେ ଜାତୀୟ ଜାଗରଣ ଉଗ୍ରରୂପ ଧାରଣ କରିଥିଲା । ଦେଶର ଉକ୍ତ ଘଡ଼ିସନ୍ଧି ସମୟରେ ଝୋଗଜନ୍ମା କୁନ୍ତଳାଙ୍କର ଆବିର୍ଭାବ ୧୯୦୦ ମସିହାରେ । କନ୍ୟାର ଆବିର୍ଭାବ ପିତା ଦାନିଏଲ ଓ ମାତା ମନିକା ଦେବୀଙ୍କ ମନରେ ଆନନ୍ଦ ଆଣିଦେଇଥିଲା କିନ୍ତୁ ପରିବାର ବର୍ଗଙ୍କ ମନରେ ଦୁଃଖର କାରଣ ହୋଇଥିଲା । ପିତା ଦାନିଏଲ କୁନ୍ତଳାଙ୍କର ଅଲୌକିକ ପ୍ରତିଭା ଦେଖି ଜାଣି ପାରିଥିଲେ ଯେ ତାଙ୍କ କନ୍ୟା ଜଣେ ବଡ ମଣିଷ ହେବ । ବାଲ୍ୟକାଳରେ କୁନ୍ତଳା ଏକାଧିକ ଭାଷାକୁ ଆୟତ୍ତ କରିଥିଲେ । ସେ ଓଡିଆ ଭାଷାରେ ଏକ ସୁଦୀର୍ଘ କବିତା (ବିଦାୟ ସଙ୍ଗୀତ) ରଚନା କରି ଉଚ୍ଚ ପ୍ରଶଂସିତ ହୋଇଥିଲେ । ଜଣେ ସାହେବ ଓଡିଆ ଘରେ ଏପରି ନିର୍ଭୀକ ଓ ସ୍ପଷ୍ଟବାଦୀ ଝିଅଦେଖି ଆନନ୍ଦିତ ତଥା ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ ।

କିଶୋର ଜୀବନରେ ସେ ଅନେକ କବିତା ଓ ଉପନ୍ୟାସ ରଚନା କରିଛନ୍ତି । ତାଙ୍କ ରଚିତ ସ୍ଫୁଲିଙ୍ଗ କବିତାରେ କବିଙ୍କର ଜାତୀୟ ଭାବ ପ୍ରକଟିତ । ଦେଶ ରକ୍ଷା ନିମନ୍ତେ ଯୁବ ଜନତାଙ୍କୁ ଆହ୍ୱାନ ଦେଇ ଗାଇଛନ୍ତି-

''ଯାଅ ତେବେ ଗୋ ସ୍ଫୁଲିଙ୍ଗ କ୍ଷୁଦ୍ର ଅଗ୍ନିକଣା
ଆଣ ଜୀବନେ ଅନନ୍ତ ଅନଳ ପ୍ରେରଣା'' ।

କବି ପରବର୍ତ୍ତୀ ରଚିତ 'କାମିନୀ ପ୍ରତି' କବିତାରେ ଭାରତୀୟ ନାରୀର ଉତ୍କର୍ଷତା ବର୍ଣ୍ଣନା କରି ହୃଦୟର କୋମଳତା ଓ ତ୍ୟାଗର ମହତ୍ତ୍ୱ ପ୍ରତିପାଦନ କରି ଯାଇଛନ୍ତି । ତତ୍ ସଙ୍ଗେ ସଙ୍ଗେ ନିଜକୁ ଜଣେ ଭାରତୀୟ ନାରୀ ଆସନରେ ଅଧିରୂଢ଼ା ହେବା ନିମନ୍ତେ ଆଶାପୋଷଣ କରି ଯାଇଛନ୍ତି -

''ଢ଼ାଳୁ ପ୍ରତି ପ୍ରାଣେ ପ୍ରେମ ପୂତ ଶାନ୍ତି ବାରି
ହେଉମୋ ଭୂଷଣ ଲଜ୍ୟା ନମ୍ରତା ବିନୟ''

କବି କୁନ୍ତଳାଙ୍କ ଉପନ୍ୟାସ ରଚନା କାଳକୁ ଉପନ୍ୟାସ ସାହିତ୍ୟର ଅଗ୍ରଗତି ଯଥେଷ୍ଟ ହୋଇନଥିଲା । ଯୁଗାନ୍ତକାରୀ ଫକୀରମୋହନଙ୍କ ରଚନାର ପ୍ରଭାବ କୁନ୍ତଳାଙ୍କ ରଚନାରେ ଅନୁମିତ ହୁଏ । ତାଙ୍କ ରଚନାର ବିଷୟବସ୍ତୁ ଓଡ଼ିଆ ସମାଜର ବାସ୍ତବ ଚିତ୍ରକୁସଂସ୍କାର, ଅନ୍ଧ ବିଶ୍ୱାସ, ମତାନ୍ଧତା ଦୂରୀକରଣ ଇତ୍ୟାଦି ତାଙ୍କ ରଚିତ ବିଭିନ୍ନ ଚରିତ୍ର ମୁଖରେ ମୁଖରିତ' । ଜଣେ ସମାଲୋଚକଙ୍କର କୁନ୍ତଳାଙ୍କ ଉପନ୍ୟାସ ସଂପର୍କରେ ମନ୍ତବ୍ୟ ଥିଲା - ''ମନେହୁଏ ଲେଖିକା ଉପନ୍ୟାସ ମଧ୍ୟଦେଇ ତାଙ୍କର ରାଜନୈତିକ ବକ୍ତୃତା ଦେଉଛନ୍ତି ବା ନାରୀ ଶିକ୍ଷା, ସ୍ୱାସ୍ଥ୍ୟ, ନାରୀଙ୍କ କର୍ତ୍ତବ୍ୟ, ଦାମ୍ପତ୍ୟ ଜୀବନର ଆଦର୍ଶ କଥାମାନ କହୁଛନ୍ତି ।

ବାସ୍ତବିକ କୁନ୍ତଳା କୁମାରୀ ଉପନ୍ୟାସର ଚରିତ୍ର ମାଧ୍ୟମରେ ଜନଜୀବନକୁ ମାର୍ଜିତ, ରୁଚି ସମ୍ପନ୍ନ କରିବା ଥିଲା ତାଙ୍କ ଜୀବନର ଆଭିମୁଖ୍ୟ, ବାଲ୍ୟ ବିବାହର କୁଫଳ, ବୈଧବ୍ୟର ଅସହ୍ୟ ଦୁଃଖ ଲେଖିକାଙ୍କ ଲେଖନୀରେ ଚିତ୍ରିତ, ସେ କାଳର ଓଡ଼ିଆ ସମାଜର ଦୁର୍ଗତି ଦୂର କରିବା, ଶିଳ୍ପ ଓ ସାହିତ୍ୟର ଉନ୍ନତି ସାଧନ ଓ ନାରୀ ସମାଜର ଉନ୍ନତି ତଥା ପ୍ରଗତି ନିମନ୍ତେ ସେ ସଦା ତତ୍ପର ଥିଲେ ।

ଦେଶର ଅସହାୟଙ୍କ ନିମନ୍ତେ ତାଙ୍କ ହୃଦୟ ବ୍ୟଥିତ ହୋଇଥିଲା । ଅନେକ ସମୟରେ ସେ ନିଜେ ନଖାଇ ଅନ୍ୟକୁ ଅନ୍ନ ଓ ବସ୍ତ୍ରଦାନ କରୁଥିଲେ ।

ସେବା ତାଙ୍କ ଜୀବନର ପରମ ବ୍ରତଥିଲା । ସରକାରୀ ଚାକିରୀରେ ରହି ଦେଶର ଜନତାଙ୍କ ସେବା କରିବା କଷ୍ଟକର ହେବାରୁ ସେ ସେହି ପଦ ପରିତ୍ୟାଗ କରି ରେଡ୍‌କ୍ରସ୍ ସଂସ୍ଥାରେ ଯୋଗଦାନ କରିଥିଲେ ଓ ଦିଲ୍ଲୀ ଯାତ୍ରା କରିଥିଲେ ।

ନାରୀ ଶିକ୍ଷା ଓ ପ୍ରଗତି ପ୍ରତି ସେ ଅଧିକ ଯତ୍ନଶୀଳ ଥିଲେ । ନାରୀର ସମସ୍ତ ଅଧିକାର ମଧ୍ୟରେ ''ମାତୃତ୍ୱ'' ଅଧିକାର ହେଉଛି ଶ୍ରେଷ୍ଠ । ଏଥିରେ ମହତ୍ତ୍ୱ - ଆତ୍ମବଳୀ ଦାନ'' ମୁଖ୍ୟ ଅଟେ ।

ଅଜ୍ଞତା ଜନିତ ଅଧିକ୍ ସଂଖ୍ୟକ ନାରୀ ପ୍ରସୂତି କାଳରେ ମୃତ୍ୟୁ ବରଣ କରିଥାନ୍ତି । ଗର୍ଭବତୀ ନାରୀ ପ୍ରତି ପଦେ ବିପଦର ସମ୍ମୁଖୀନ । ଅନ୍ତୁଡ଼ି ଶାଳରେ ଅନାଚାର , ପରିବାର ବର୍ଗଙ୍କ ହୃଦୟ ହୀନତା ଓ ଅମାନୁଷିକ ବ୍ୟବହାର ସମାଜର କୌଣସି ବ୍ୟକ୍ତିର ଦୃଷ୍ଟି ଆକର୍ଷଣ କରେ ନାହିଁ । ନାରୀ, ସମାଜରେ ପୁରୁଷର ଭୋଗ୍ୟ ବସ୍ତୁ ରୂପେ ଗୃହୀତ । କ୍ରୀତଦାସ ଜୀବନ ତା ପାଇଁ ଶ୍ରେୟସ୍କର । ଶିଶୁକୁ ଜନ୍ମ ଦେଇ ନପାରି ମୃତ୍ୟୁ ବରଣ କଲେ କେହି ଦୁଃଖିତ ନୁହଁନ୍ତି । କାରଣ ପୁରୁଷ ଦ୍ୱିତୀୟ ବିବାହ କରିବାରେ ଆପତ୍ତି ନାହିଁ । ତେଣୁ ପୁରୁଷ ପ୍ରାଧାନ୍ୟ ସମାଜରେ ପୁରୁଷର ଔଦ୍ଧତ୍ୟ ଅତ୍ୟଧିକ ଥିଲା । ନାରୀ ଦୁର୍ଦ୍ଦଶା ଦୂରୀକରଣ ଓ ଆଧୁନିକ ଚିକିତ୍ସା ଜ୍ଞାନ ନିମନ୍ତେ ସେ ''ଅନ୍ତୁଡ଼ି ଶାଳରେ ଅନାଚାର'' ନାମକ ଏକ ପ୍ରବନ୍ଧ ରଚନା କରିଥିଲେ । ସେଥିରେ ଆଧୁନିକ ଚିକିତ୍ସା ସମ୍ବନ୍ଧରେ ଦର୍ଶାଇଛନ୍ତି । ଉକ୍ତ ପ୍ରବନ୍ଧ ସାହିତ୍ୟ ଜଗତରେ ବହୁଦିନ ଧରି ସ୍ଥାନ ପାଇନଥିଲା । ଏକ ନାରୀ ପ୍ରଚେଷ୍ଟାରେ ନାରୀ ପ୍ରତିଭାର ପୁନରୁଦ୍ଧାର କରାଯାଇ ଲୁକ୍କାୟିତ ରଚନାକୁ ଜନ ସମାଜରେ ଉପସ୍ଥାପନ କରାଯାଇ ପାରିଛି । ଏହି ସ୍ଥଳରେ ଲେଖିକାଙ୍କ ପ୍ରଚେଷ୍ଟା ଅଧିକ ପ୍ରଶଂସନୀୟ ଅଟେ । ଅଭିଭାବକ ମାନଙ୍କୁ କନ୍ୟାର ଶିକ୍ଷା ଜ୍ଞାନାଲୋକ ପ୍ରଦାନ ନିମନ୍ତେ ଅଧିକ ପ୍ରୋତ୍ସାହିତ କରିଛନ୍ତି, ଏଥିପାଇଁ ଜୀବନରେ ତାଙ୍କୁ ବହୁଞ୍ଜଦ୍ୱଞ୍ଜା ସହ୍ୟ କରିବାକୁ ପଡ଼ିଥିଲା । ତଥାପି ସେ ତାଙ୍କ କର୍ମ ପଥରେ ଥିଲେ ଅଗ୍ରଣୀ । ତାଙ୍କ ମତରେ -

କର୍ମ ମୋହର ପ୍ରେମ ମନ୍ତ୍ର, ମର୍ମ ମୋ ଧର୍ମ ଦୀକ୍ଷା<br>
କର୍ମଲକ୍ଷ୍ୟ, କର୍ମ ମୋକ୍ଷ, କର୍ମ ପରମ ଶିକ୍ଷା''

କର୍ମଲକ୍ଷ୍ୟ, କର୍ମ ମୋକ୍ଷ, କର୍ମ ପରମ ଶିକ୍ଷା, ମାତୃଜାତିର ଉନ୍ନତି ନିମନ୍ତେ ସେ ଜଗତବାସୀଙ୍କୁ ଏହି ଉଦ୍‌ବୋଧନୀ ବାଣୀ ଶୁଣାଇଛନ୍ତି ।

କୁନ୍ତଳା ଦେବୀ ଥିଲେ ଯୁଗ ବିପ୍ଳବିଣୀ, କବିତା ମାଧ୍ୟମରେ ଦେଶବାସୀଙ୍କୁ ଏକତ୍ରିତ କରିବା, ଅନ୍ତରରେ ଦେଶପ୍ରୀତି ଜାଗରିତ କରିବା ଥିଲା ତାଙ୍କ ରଚନାର ପ୍ରଧାନ ଆଭିମୁଖ୍ୟ । ବାସ୍ତବ କ୍ଷେତ୍ରରେ ଉପନ୍ୟାସ ଚରିତ୍ର ମାଧ୍ୟମରେ ଜନ ଜୀବନକୁ ମାର୍ଜିତ ନିୟନ୍ତ୍ରିତ କରିବା ସ୍ୱାଧୀନତା ପାଇଁ ଜନ ଜାଗରଣ ସୃଷ୍ଟିକରିବା ଥିଲା ତାଙ୍କ ଜୀବନର ମୂଳ ମନ୍ତ୍ର ।

ବାସ୍ତବିକ କୁନ୍ତଳା ଦେବୀଥିଲେ ଊନବିଂଶ ଶତାବ୍ଦୀର ଏକ ଉଦୀପ୍ତ ଆଲୋକ । ବିଂଶ ଶତାବ୍ଦୀ ତଥା ଯୁଗେ ଯୁଗେ ସେ ଚିର ବନ୍ଦନୀୟା ଓ ଯୁଗାବ୍ଦୀର ଏକ ଜ୍ୟୋତିଷ୍କ ହୋଇ ଚିର ଅମର ରହିବେ ।



# କୁଂତଳାଙ୍କ କାବ୍ୟ ମାନସ - ଏକ ଅନୁଧ୍ୟାନ

*ପ୍ରେମଲତା ଦେବୀ*

ଜାତିର ଦୁର୍ଗତି ସମୟରେ ଉତ୍କଳର ନାରୀ ଲେଖନୀର ତମସାବୃତ ସାରସ୍ୱତ ଆକାଶକୁ ଜ୍ୟୋତିର୍ମୟ କରି ତୋଳିଥିବା ମହୀୟସୀ ଅନନ୍ୟା ନାରୀ ଜଣକ ହେଉଛନ୍ତି ଡାକ୍ତର କୁଂତଳା କୁମାରୀ ସାବତ । ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ବସ୍ତର ରାଜ୍ୟର ଏକ ଝଡ଼ଝଞ୍ଜା ପୂର୍ଣ୍ଣ ଅଂଧାର ରାତି; ପିତା ଦାନିଏଲ ଓ ମାତା ମନିକା ଦେବୀଙ୍କ ଔରସରୁ ଫେବୃୟାରି ମାସ ୮ ତାରିଖ, ୧୯୦୦ ମସିହାରେ ଏହି ଅସାଧାରଣ ଧୀଶକ୍ତିର ଅଧିକାରିଣୀ କୁଂତଳା ଜନ୍ମ ନିଅନ୍ତି । ଏହାଙ୍କର ପୈତୃକ ଗ୍ରାମ ପୁରୀଜିଲ୍ଲା, ପିପିଲି ଥାନାଅନ୍ତର୍ଗତ ଦାଣ୍ଡ ମୁକୁନ୍ଦପୁର ଗ୍ରାମ । ଏମାନଙ୍କ ପୂର୍ବ ପୁରୁଷ ବ୍ରାହ୍ମଣ ଥିଲେ । ଏକଦା ଦୁର୍ଭିକ୍ଷ ସମୟରେ କୁଂତଳାଙ୍କ ଜେଜେବାପା ଛତ୍ରରେ ଖାଇଥିବାରୁ, ତାଙ୍କୁ ଜାତିରୁ ବାସନ୍ଦ କରାଯାଇଥିଲା । ସେହିଦିନଠାରୁ ସେମାନେ ଖ୍ରୀଷ୍ଟିଆନ ସାବତ ପରିବାର ଭାବରେ ପରିଚିତ ହେଉଥିଲେ । କୁନ୍ତଳାଙ୍କ ପିତା ଦାନିଏଲ ଇଂରେଜୀ ଶିକ୍ଷାକରି, ସେମାନଙ୍କ ସହାୟତାରେ ଡ଼ାକ୍ତରୀ ପାଶ୍‌କଲେ । ପ୍ରଥମେ ଜଗଦଲପୁର, କଲିକତା ଓ ପରେ ବର୍ମା ପୋର୍ଟରେ ପ୍ଲେଗ୍ ରୋଗର ପ୍ରତିଷେଧକ କ୍ୱାରାଣ୍ଟିନ୍ ଡ଼ିଉଟିରେ ରହିଗଲେ । କୁନ୍ତଳାଙ୍କ ଶୈଶବ ବର୍ମାରେ କଟିଥିଲା । ଆବାଲ୍ୟରୁ ସେ ହିନ୍ଦୀ ଭାଷା ଶିଖିଥିଲେ । ମାତ୍ର ପନ୍ଦର ବର୍ଷ ବୟସରେ ସେ ମା ଓ ଜେଜେମାଙ୍କ ସହ ଖୋର୍ଦ୍ଧା ପଳାଇ ଆସିଥିଲେ । ୧୯୧୭ ମସିହାରେ ସେ ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ନାମ ଲେଖାଇଥିଲେ । ପିଲାଦିନୁ ସେ ଭାରି ମେଧାବୀ ଥିଲେ । ସେତେବେଳେ ନାରୀ ଶିକ୍ଷାର ପ୍ରଚଳନ ସୀମିତ ଥିଲା । ବହୁ ପ୍ରତିକୂଳ ଅବସ୍ଥାରେ ସେ ପ୍ରବେଶିକା ପରୀକ୍ଷାଦେଇ; ଡ଼ାକ୍ତରୀ ଶିକ୍ଷାସମାପ୍ତ କରିଥିଲେ ।

ପିତାଙ୍କ ଉପେକ୍ଷା, ଦାରିଦ୍ର୍ୟ, ମାତାଙ୍କର ଅଶ୍ରୁଳ ଆନନ, ପାରିପାର୍ଶ୍ୱିକ ବହୁ ପ୍ରତିକୂଳ ଅବସ୍ଥାରେ ସଂଘର୍ଷକରି ସେ ଡ଼ାକ୍ତରଟିଏ ହୋଇପାରିଥିଲେ । ଋଣକରି କଟକସ୍ଥ ଗଂଗା ମନ୍ଦିର ନିକଟରେ ବସାଘରଟିଏ କରି ନାରୀ ରୋଗୀ ମାନଙ୍କର ଚିକିତ୍ସା କଲେ । ଅବସର ସମୟରେ ସେ ଲେଖା ଲେଖି କରିବାରେ ମନୋନିବେଶ କରୁଥିଲେ ।

କୁନ୍ତଳାଙ୍କୁ ଜଣେକୀ ମିଷ୍ଟଭାଷିଣୀ, ସୁ ଚିକିତ୍ସିକା, ଦେଶ ପ୍ରେମୀ, ସଂଗଠିକା, ଗୀତିକବିତା ରଚୟିତା, ଔପନ୍ୟାସିକା, ସଂପାଦିକା, ବାଗ୍ମୀ ସର୍ବୋପରି ନିରଳସ ସାରସ୍ୱତ କର୍ମୀ ଭାବରେ ବିଚାର କରାଯାଇପାରେ ।

'ତାରାପ୍ରତି' କବିତାରୁ ତାଙ୍କ ସାହିତ୍ୟିକ ଜୀବନର ଅୟମାରମ୍ଭ ହୋଇଥିଲା । ୧୯୨୨ ରୁ ୩୫ ପର୍ଯ୍ୟନ୍ତ ସେ ନିରବଚ୍ଛିନ୍ନ ଭାବରେ ଲେଖନୀ ଚାଳନା କରିଥିଲେ । ତାଙ୍କର କବିତାଗୁଡ଼ିକ ମଧ୍ୟରୁ କେତେକ ଭଗବତ୍ କୈନ୍ଦ୍ରିକ, ଦେଶାତ୍ମବୋଧକ ଓ ମାନବବାଦୀ ସମ୍ବେଦନଶୀଳତାରେ ଉର୍ଜ୍ଜସ୍ୱଳ । 'ଅଞ୍ଜଳି' କବିତା ସଂକଳନରେ ତାଙ୍କର ବିଭୁବନ୍ଦନାରୁ ସବୁଧର୍ମ ପ୍ରତି ତାଙ୍କର ଉଦାର ଭାବର ପରିଚୟ ମିଳିଥାଏ । ହିନ୍ଦୁ ଧର୍ମରୁ ଖ୍ରୀଷ୍ଟିୟାନ ଓ ପରେ ନିଜେ ବ୍ରାହ୍ମଧର୍ମ ଗ୍ରହଣ କରି ଥିବାରୁ ଏଭଳି ଆବେଗଦୀପ୍ତ ସର୍ବଧର୍ମ ପ୍ରୀତି ତାଙ୍କ କବିତା ମାନଙ୍କରୁ ଅନୁଭୂତ ହୁଏ । ପୂଜାପଦ୍ଧତି କବିତାରେ -

''ହରି ହରି କେହି ଡ଼ାକୁଛି ସତତି ପ୍ରଭୁ ପ୍ରଭୁ କେହିକହେ
ତୁମ୍ଭ ନାମ ମୁଖେ ନ ନେଇ କେହିବା ତୁମ ପାଇଁ ଦୁଃଖ ସହେ
କୃଷ୍ଣରୂପେ କେହିକରେ ଆରାଧନା, ଖ୍ରୀଷ୍ଟ କହି କେହି କରୁଛି ବନ୍ଦନା
ସବୁତ ପ୍ରାର୍ଥନା ସବୁତ ବନ୍ଦନା, ସବୁ ସତ୍ୟ ମିଥ୍ୟା ନୁହେଁ''

କୁନ୍ତଳାଙ୍କ ଆଦ୍ୟ ଜୀବନର ପ୍ରଣୟୋଚ୍ଛଳ ତାରୁଣ୍ୟ ସୁଲଭ ଅନୁଚିନ୍ତାରେ ମଗ୍ନ 'ଅଞ୍ଜଳି' ହୁଏତ କାହା ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ ହୋଇ ପାରେ। କିନ୍ତୁ ଈଶ୍ୱରଙ୍କୁ ସମର୍ପିତ ହୋଇଥାଇ ପାରେ ବୋଲି ସମାଲୋଚକମାନେ ମତବ୍ୟକ୍ତ କରିଥାନ୍ତି। ପଖାଳ ଭାତକୁ ନମିଳେ ଲୁଣ/ ତବତ ସାଂଗକୁ ନାହିଁ ତିଅଣ, ଗୋରୁ ହେଲେ ହଡ଼ା, ଲୋକେହେଲେ ମଡ଼ା,

ସାର କୁଲିଗିରି ଚାହା ବଗିଚାକାମ

ଆଉ ଏକ କବିତା ଗ୍ରନ୍ଥ ପ୍ରେମଚିନ୍ତାମଣି', ଚାତକିନୀ, ନବନୀରଦ ଓ ନୀରପାନ ଭଳି ତିନିଗୋଟି ପର୍ଯ୍ୟାୟରେ ବିଭକ୍ତ ହୋଇଅଛି। ଖ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କୁ ପ୍ରତୀକ ଭାବରେ ଗ୍ରହଣ କରି କୁନ୍ତଳା ନିଜ ଜୀବନର ଆତୁର ପ୍ରତିଲିପି ବାଢ଼ିଛନ୍ତି ଏବଂ ଶେଷରେ ବୈଷ୍ଣବ କବିମାନଙ୍କ ପରି ନିଜକୁ ବିଭୁଚରଣାରବିନ୍ଦରେ ସଂପୂର୍ଣ୍ଣଭାବେ ସମର୍ପଣ କରି ଦେଇଛନ୍ତି।

କବି ୧୯୨୪ ମସିହାରେ କେଶବଚନ୍ଦ୍ର ସେନ୍‌ଙ୍କ ପ୍ରତିଷ୍ଠିତ ବ୍ରାହ୍ମସମାଜ ନବବିଧାନର ସଭ୍ୟା ଥିଲେ ଓ ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ। ଦିଲ୍ଲୀରେ ଅନାଥ ଦଳିତ ପତିତ ବିଧବା ମାନଙ୍କ ସେବା କରୁଥିବା କୃଷ୍ଣପ୍ରସାଦ ବ୍ରହ୍ମଚାରୀଙ୍କୁ ସେ ସମାଜସଂସ୍କାରକ ବୈରାଗୀ ମିଶ୍ରଙ୍କ ଜରିଆରେ ପତ୍ର ଲେଖିଥିଲେ ଓ ତାଙ୍କୁ ହିଁ ବିବାହ କରିଥିଲେ। ଦିଲ୍ଲୀଯାଇ ସେ ଚିକିତ୍ସା କାର୍ଯ୍ୟ କଲେ। ସାହିତ୍ୟ ସାଧନା ବିବାହ ପରେ ସ୍ତିମିତ ହୋଇଯାଇଥିଲା, ତଥାପି ଦିଲ୍ଲୀରେ ଥାଇ ମଧ ସେ ଓଡ଼ିଆଙ୍କ କାନ୍ଦଣା, ଓଡ଼ିଆ କୃଷକମାନଙ୍କ ନିସ୍ପେଶିତ ଦୟନୀୟ ଇତିହାସକୁ ଅକ୍ଷରରୂପ ଦେଇଥିଲେ। ହିନ୍ଦୀରେ 'ବରମାଳା' ନାମକ ଗୀତଗ୍ରନ୍ଥଟିଏ ରଚନା କରିଥିଲେ। 'ମହାବୀର', 'ଜୀବନ', 'ନାରୀ ଭାରତୀ' ପତ୍ରିକାର ସଂପାଦକ ଥିଲେ। ଉତ୍କଳ ସାହିତ୍ୟ, ମୁକୁର, ଉତ୍କଳ ପ୍ରଦୀପ ପ୍ରଭୃତିରେ ସେ ପ୍ରବଂଧ ମାନ ପ୍ରକାଶ କରିଥିଲେ। ନାରୀ ଶିକ୍ଷାର ପ୍ରାଧାନ୍ୟ, ବାଲ୍ୟବିବାହ ପ୍ରଥାର ଉଚ୍ଛେଦ, ବିଧବା ବିବାହ ଆଦି ତାଙ୍କର ଉଦ୍ଦେଶ୍ୟଥିଲା। ସେ ଆହ୍ଲାବାଦ୍ ଇଉନିଭରସିଟି, ହିନ୍ଦୁ ଇଉନିଭରସିଟି, ଉତ୍ତର ଭାରତର ବିଶ୍ୱବିଦ୍ୟାଳୟମାନଙ୍କର ସମାବର୍ତ୍ତନ ଉତ୍ସବରେ ଭାଷଣ ପ୍ରଦାନ କରୁଥିଲେ। ଉତ୍କଳ ନାରୀ ସମିତିର ସଭାନେତ୍ରୀ, ମହାରାଣୀ ଲକ୍ଷ୍ମୀବାଈ ଜୟନ୍ତୀର ସଭାପତି ଥିଲେ। ବାଲ୍ୟ ବିବାହ, ନିରୋଧ ବିଧବା ବିବାହ ପ୍ରଚଳନ ସଂସ୍କାର ସଭାନେତ୍ରୀ ଥିଲେ। ବୃନ୍ଦାବନ ଗୁରୁକୁଳ ବିଶ୍ୱବିଦ୍ୟାଳୟର ପ୍ରଶାସିକା, ଦିଲ୍ଲୀ ଭାରତୀ ତପୋବନର ସଂଗଠିକା ପ୍ରଭୃତି ବହୁ ସାଂସ୍କୃତିକ କାର୍ଯ୍ୟମାନଙ୍କରେ ସଂପୃକ୍ତ ଥିଲେ।

ଉତ୍କଳରେ ଅସହଯୋଗ ଆନ୍ଦୋଳନ ସମୟରେ ଉତ୍କଳର ନାରୀ ଶ୍ରୀମତୀ ଚଞ୍ଚଳା ଦେବୀ, ଯମୁନା ଦେବୀ, ଶ୍ରୀମତୀ ରାଧାମଣିଦେଇ ପ୍ରମୁଖ ମହିଳା ସମିତି ପୁରୀରେ ଗଢ଼ିଥିଲେ। ପୁରୀର ଏହି ମହିଳା ବଂଧୁ ସମିତି କୁନ୍ତଳାଙ୍କୁ ଉତ୍କଳଭାରତୀ ଉପାଧିରେ ଭୂଷିତ କରିଥିଲା। ନାରୀ ଜାଗରଣର

ପ୍ରବାହରେ ବିଭୋର ହୋଇ ସେ ଉତ୍କଳ ସମ୍ମିଳନୀ ପାଇଁ "The Neglecited Land" ନାମରେ ଏକ କବିତା ରଚନା କରିଥିଲେ । Redcroes Service ର ମଧ ସେ ସଭ୍ୟା ଥିଲେ ।

ତାଙ୍କର ଦାମ୍ପତ୍ୟ ଜୀବନ ମଧୁମୟ ନଥିଲା, ପ୍ରଥମ କନ୍ୟା ଉତ୍କଳ କୁମାରୀ ଦଶ ବର୍ଷ ବୟସରେ ପ୍ରାଣତ୍ୟାଗ କରିଥିଲେ । ଚାରିଟି ସନ୍ତାନର ଜନନୀ ଶେଷ ପୁତ୍ର ସନ୍ତାନକୁ ଜନ୍ମ ଦେଇ ମାତ୍ର ଅଠତିରିଶ ବର୍ଷ ବୟସରେ ଇହଲୀଳା ସାଙ୍ଗ କରିଥିଲେ ।

ଗଦ୍ୟସାହିତ୍ୟରେ ଉପନ୍ୟାସର ଶୂନ୍ୟସ୍ଥାନ ପୂରଣ କରିବାକୁ ଯାଇ ସେ 'ପରଶମଣି', 'ଭ୍ରାନ୍ତି', 'ରଘୁଅରକ୍ଷିତ', 'କାଳୀବୋହୂ' ରଚନା କରିଯାଇଥିଲେ । ଉତ୍କଳୀୟ ନାରୀ, ଓଡ଼ିଶାର ପର୍ବପର୍ବାଣି, ଆତ୍ମୀୟତା, ଆତିଥେୟ ପ୍ରତି ଏଗୁଡ଼ିକରେ ତାଙ୍କର ଗଭୀର ସହାନୁଭୂତି ପ୍ରକଟିତ ହୋଇଅଛି ।

ଉଚ୍ଛ୍ୱାସ କବିତା ଗ୍ରନ୍ଥରେ କବି କାମିନୀ, ସହକାର, ଗଂଗଶିଉଳି ଫୁଲକୁ ତାଙ୍କ ମନଗହନର କଥା ଶୁଣାଇଛନ୍ତି । ଏଗୁଡ଼ିକୁ ସେ ସମ୍ବୋଧନ କରିଛନ୍ତି । ଇଂରାଜୀ ସାହିତ୍ୟରେ Keats ମାତ୍ର ପାଞ୍ଚ ଗୋଟି Ode ରଚନା କରି ଯେଉଁ ସମ୍ମାନ ଦାବୀ କରନ୍ତି, ଉଚ୍ଛ୍ୱାସର କବି କୁନ୍ତଳା ମଧ ଅନୁରୂପ ସମ୍ମାନର ଅଧିକାରିଣୀ ହୋଇ ପାରିଛନ୍ତି ।

ତୋହପରି କ୍ଷୁଦ୍ର ମୁହିଁ ତୋହପରି କ୍ଷଣିକ
ହସେ ବାସେ ରସେ ମାତ୍ର ଫୁଟି ଅଛି ଘଡ଼ିକ
ମାଟିରେ ମିଶିବୁ ତୁହି   ମାଟିରେ ମିଶିବି ମୁହିଁ
ତଥାପି ମୋ ଆତ୍ମାଫୁଲ ନଯିବରେ ମଉଳି
ତେଣୁ ଆଶାବହି ଦିନକାଟେ ଗଂଗଶିଉଳି ।

କବିଙ୍କର ପ୍ରକୃତି ପ୍ରାଣତା, ନୈରାଶ୍ୟବାଦୀ ଚିନ୍ତାଧାରାର ଆଲେଖ୍ୟ ଉଚ୍ଛ୍ୱାସ'ର ପ୍ରତ୍ୟେକଟି କବିତା ବହନ କରିଥାଏ ।

ଅନ୍ୟ ଏକ ନିରୂପିତ ସ୍ୱର, ଦେଶପ୍ରେମର ସ୍ୱାକ୍ଷର ତାଙ୍କର ସ୍ଫୁଲିଙ୍ଗ କବିତା ଗୁଡ଼ିକରୁ ବାରି ହୁଏ । ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନର ଅନିନ୍ଦ୍ୟ ଉଲ୍ଲାସ, ନାରୀମାନଙ୍କୁ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବାପାଇଁ, ନିଷ୍ପ୍ରାଣ ଯୁବଶକ୍ତିକୁ ଜାଗ୍ରତ କରିବା ପାଇଁ କୁନ୍ତଳାଙ୍କର କବିତା ଗୁଡ଼ିକ ଥିଲା ଶବ୍ଦରୂପୀ ମୃତ୍ୟୁ ସଞ୍ଜିବନୀ ସୁଧା । ରାଧାନାଥ ରାୟଙ୍କ 'ଶିବାଜୀଙ୍କ ଉତ୍ସାହବାଣୀ', ମଧୁସୂଦନ ରାଓଙ୍କ 'ଉତ୍କଳଗାଥା' ପରି ପରାଧୀନ ଉତ୍କଳବାସୀଙ୍କ ପ୍ରେରଣାର୍ଥେ କବିତା ଗୁଡ଼ିକ ଉଦ୍ଦିଷ୍ଟ । ଯଥା -

''ଉଠ ଉଠ ତେବେ ଉଠ ମୋର ଭାଇ
ଆର୍ଯ୍ୟ - ତେଜ ତବ - ରକ୍ତୁଁ ଯାଇ ନାହିଁ
ମାତୃ ନାମେ ମନ୍ତ୍ରେ
ଉଠ ହେ ଏକତ୍ରେ
ତେତ୍ରିଶ କୋଟି ମାତୃସ୍ତବଗାଇ ।''

ବୀର ପ୍ରସବିନୀ ଉତ୍କଳର ଜୀର୍ଣ୍ଣାଶୀର୍ଣ୍ଣା ଅବସ୍ଥାକୁ ଲକ୍ଷ୍ୟକରି କବି କହନ୍ତି-

କିଏ ହସି ଦେବ ପ୍ରାଣ ଭାଇ, ବିଶ୍ୱ ଡ଼ାକୁଛି ବାହାକୁ
କିଏ କାନ୍ଦିକାନ୍ଦି ଗାଇବ ଗୀତଟି ଆଗୁସାର ସବୁ କାହାକୁ

ନାରୀମାନଙ୍କୁ କେବଳ ଗୃହ କର୍ମରେ ଆବଦ୍ଧ ନରହି ସ୍ୱାଧୀନତା ସଂଗ୍ରାମରେ ସାମିଲ ହେବାପାଇଁ ପ୍ରେରଣା ଯୋଗାଇଛନ୍ତି ।

ପଛଘୁଞ୍ଚା ଆଉ ନଦିଅ ଏଥର/ନିଅ ପରିଶୋଧ ମଣିଷ ପଣର
ହେ ପୁରୁଷ ଯଦି ନ ଉଠ ଏଥର/ଆମେ ରଣ ବେଶେ ହେବୁଁ ଅଗ୍ରସର
ଆମେ ନାରୀଗଣ କୋଣରୁ ବାହାରି/ଧରିବୁଁ ଅସହଯୋଗ ତରବାରୀ

ଅବଶ୍ୟ ସ୍ଫୁଲିଙ୍ଗରେ ସ୍ଥାନିତ କବିତାମାନଙ୍କରେ କଳା ଦୃଷ୍ଟିର ଅଭାବ ପରିଲକ୍ଷିତହୁଏ, ମାତ୍ର ଏହାର ଅଗ୍ନିବର୍ଷୀ ବାଣୀ ମୁମୂର୍ଷୁ ପ୍ରାଣକୁ ଉନ୍ମାଦିତ କରିବାରେ କବିତା ଗୁଡ଼ିକ ଅଭିପ୍ରେତ । ସ୍ଫୁଲିଙ୍ଗର ଉତ୍ସର୍ଗ ପତ୍ରରେ କବି ନିଜେ ଲେଖିଛନ୍ତି -

ଯାଅ ତେବେ ଗୋ ସ୍ଫୁଲିଙ୍ଗ କ୍ଷୁଦ୍ରଅଗ୍ନିକଣା
ଆଣ ଜୀବନେ ଅନନ୍ତ ଆନନ୍ଦ ପ୍ରେରଣା

ତାଙ୍କର ଲକ୍ଷ୍ୟ ଥିଲା ଜୀବନରେ ଯେତେ ବାଧାବିଘ୍ନ ଆସୁ ଭ୍ରୂକ୍ଷେପ ନକରି, ପାରମ୍ପରିକତା, କୁସଂସ୍କାରକୁ କୁଠାରଘାତ କରି ନୂତନ ଉଦ୍ଦାମତାରେ, ଉନ୍ମାଦନାରେ ନବଜୀବନର ସର୍ଜନା କରିବାକୁ ହେବ । ବିଦେଶୀ ଶାସନର ଅନାଚାର, ଅତ୍ୟାଚାର, ରାଜା ଜମିଦାରଙ୍କ ଶୋଷଣ ପେଷଣ, ଦେଶସେବକଙ୍କୁ ନିର୍ବାସନ, କଳାପାଣି ଦଣ୍ଡ ପ୍ରଭୃତିର ଚିତ୍ର କବିଙ୍କ 'ଆହ୍ୱାନ' କବିତା ଗ୍ରନ୍ଥରେ ଉତ୍କୀର୍ଣ୍ଣ । ଇଂରେଜ ସରକାରଙ୍କ ଦ୍ୱାରା ବାଜ୍ୟାପ୍ତ ହୋଇଥିଲା । କବିଙ୍କ ମାନବବାଦୀ ସମ୍ବେଦନଶୀଳ ମନୋଭାବଟିକୁ କେତେକ କବିତା ସ୍ପଷ୍ଟ ଚିହ୍ନିତ କରିଥାଏ । ଚଣ୍ଡୀଦାସଙ୍କଭଳି ସେ ମଣିଷକୁ ହିଁ ଉଚ୍ଚସ୍ଥାନ ଦେଇଛନ୍ତି ।

'ଶୁଣହେ ମଣିଷ ଭାଇ/ଝୁରିମରିବାକୁ, ବୁଡ଼ିମରିବାକୁ ମଣିଷ ଜନମି ନାହିଁ ।'

କୁନ୍ତଳାଙ୍କର ଆଉ ଦୁଇଟି ରଚନା ଅପ୍ରକାଶିତ ହୋଇ ରହିଯାଇଛି, ଅସଂପୂର୍ଣ୍ଣ କାବ୍ୟ ମଣିକାଞ୍ଚନ ଧାରାବାହିକ ଭାବରେ ଉତ୍କଳ ସାହିତ୍ୟରେ ପ୍ରକାଶିତ ହେଉଥିଲା । ଅନ୍ୟଏକ ଉପନ୍ୟାସ 'ଚିତ୍ରପଟ' ମଧ ପୂର୍ଣ୍ଣାଙ୍ଗ ରୂପ ପରିଗ୍ରହ କରିପାରି ନାହିଁ ।

ହୁଏତ ଆଉ କିଛିଦିନ ବଞ୍ଚିଥିଲେ ଓଡ଼ିଆ ସାହିତ୍ୟ ତାଙ୍କ ଦ୍ୱାରା ଆହୁରି ପୁଷ୍ଟଳ ଓ ରୁଦ୍ଧିମନ୍ତ ହୋଇ ଉଠିଥାନ୍ତା । ମାତ୍ର ବିଧିର ବିଧାନ ବିଚିତ୍ର । ଗଂଗଶିଉଳି ଫୁଲ ପରି କ୍ଷଣିକ ପାଇଁ ଫୁଟି ସେ ସାରସ୍ୱତ ପରିବେଶକୁ ସୁବାସରେ ଭରିଦେଇ ବୃନ୍ତଚ୍ୟୁତ ହୋଇ ଗଲେ । ଓଡ଼ିଆ ସାହିତ୍ୟ କାଶକୁ ଏକ ଉଜ୍ଜ୍ୱଳ ଧ୍ରୁବତାରା ସଦୃଶ ସେ ଯୁଗ ଯୁଗ ଧରି ଆଲୋକିତ କରୁଥିବେ, ଏଥିରେ ସନ୍ଦେହ ନାହିଁ ।

*ଓଡ଼ିଆ ବିଭାଗ ମୁଖ୍ୟ, ଏକାମ୍ର ମହାବିଦ୍ୟାଳୟ*
*ପ୍ରଚୁଣା ଭୁବନେଶ୍ୱର -୨*



# କୁନ୍ତଳା କୁମାରୀ - ଏକ ବହୁମୁଖୀ ପ୍ରତିଭା

*ଡଃ ନୀରଜା କୁମାରୀ ମହାଂତି*

ଏ ଧରାପୃଷ୍ଠରେ ବେଳେବେଳେ ଏପରି ବ୍ୟକ୍ତି ବିଶେଷ ଜନ୍ମ ଗ୍ରହଣ କରିଥାନ୍ତି, ଯାହାଙ୍କର କାର୍ଯ୍ୟ, ନିଃ ସ୍ୱାର୍ଥପର ସେବା, ତ୍ୟାଗ ଓ ଲେଖନୀଦ୍ୱାରା ମନୁଷ୍ୟ ସମାଜର ପ୍ରଭୂତ କଲ୍ୟାଣ ସାଧିତ ହୋଇଥାଏ । ଆଜକୁ ଏକଶତ ବର୍ଷ ତଳେ ୧୯୦୦- ଫେବୃୟାରୀ ୮ତାରିଖ ଶୁକ୍ରବାର ଭୋର ୫ଟାରେ ଆମର ଉତ୍କଳ ଭୂମିରେ ଠିକ୍ ସେହିପରି ଜଣେ ଅତୀବ ଧୀ-ଶକ୍ତି ସମ୍ପନ୍ନା, ସୃଜନଶୀଳା ଓ ପ୍ରଚଣ୍ଡ ସ୍ୱାଭିମାନୀ ନାରୀଙ୍କର ଆବିର୍ଭାବ ହୋଇଥିଲା । ଦାନିଏଲ୍ ସାବତ୍ ଓ ମନିକାଙ୍କ ପରିବାରରେ ବସ୍ତର ଜିଲ୍ଲାରେ ସେ ମହିୟସୀ ମହିଳା ଆଉ କେହି ନୁହଁନ୍ତି, ସେ ହେଉଛନ୍ତି ଆମର ଚିର ନମସ୍ୟା କୁନ୍ତଳା କୁମାରୀ ସାବତ୍ । ତାଙ୍କର ଜୀବନକାଳ ମାତ୍ର ୩୮ବର୍ଷ (୧୯୦୦-୧୯୩୮)ରେ ସୀମିତ ଥିଲା । ଜଣେ ସାମାନ୍ୟ ଶିଶୁ ଭାବରେ ଏକ ଅଖ୍ୟାତ ପଲ୍ଲୀ କୋଳରେ ଜନ୍ମ ହୋଇଥିଲେ ମଧ୍ୟ ସ୍ୱଳ୍ପ ଜୀବନ କାଳ ମଧ୍ୟରେ ସେ ସମସ୍ତ ସୀମା ଅତିକ୍ରମ କରି ସମଗ୍ର ନାରୀ ଜାତିର ଗର୍ବ ଓ ଗୌରବର ଅଧିକାରିଣୀ ହୋଇ ପାରିଥିଲେ ।

କୁନ୍ତଳାକୁମାରୀଙ୍କର ଜୀବନୀ ପାଠକଲେ ଜଣାଯାଏ, ଜନ୍ମରୁ ଆରମ୍ଭକରି ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କର ଜୀବନ ଅତ୍ୟନ୍ତ ସଂଘର୍ଷ ଥିଲା । ଜୀବନର ପ୍ରତିଟି ସ୍ତରରେ ସେ ଯେଉଁ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇଛନ୍ତି, ତାହାକୁ ସେ ବେଳର ସାମାଜିକ ଚଳଣୀ ଓ କଠୋର ଶୃଙ୍ଖଳା ମଧ୍ୟରେ କିପରି ଯେ ମୁକାବିଲା କରି ନିଜର ଲକ୍ଷ୍ୟ ପଥରେ ଆଗେଇ ଚାଲିଥିଲେ, ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଯେତେବେଳେ ନାରୀଜାତି ଅତ୍ୟନ୍ତ ଅଶିକ୍ଷିତ ଓ ଅବହେଳିତ ଅବସ୍ଥାରେ ପୁରୁଷର କେବଳ ସଖୀ କଣ୍ଢେଇ ସାଜିଥିଲା ଠିକ୍ ସେତିକିବେଳେ କୁନ୍ତଳା କୁମାରୀ ତାଙ୍କର ଏକାଗ୍ର ଅଭୀପ୍ସା, ଐକାନ୍ତିକ ନିଷ୍ଠା ତଥା ଆନ୍ତରିକ ପ୍ରୟାସ ଦ୍ୱାରା ବିଦ୍ୟାଳୟଠାରୁ ଆରମ୍ଭକରି ଡ଼ାକ୍ତରୀ ପାଶ୍‌କଲା ପର୍ଯ୍ୟନ୍ତ ପ୍ରତ୍ୟେକ ଶ୍ରେଣୀରେ ଶୀର୍ଷସ୍ଥାନ ଅଧିକାର କରି ସମସ୍ତଙ୍କୁ ହତଚକିତ କରି ଦେଇଥିଲେ । ସେ ଥିଲେ ଅତ୍ୟନ୍ତ ଶୃଙ୍ଖଳା ପ୍ରିୟ, ତ୍ୟାଗୀ, ଗମ୍ଭୀର ·ଆଶାବାଦୀ ଓ ଭଗବତ୍ ବିଶ୍ୱାସୀ ଜଣେ ଭାରତୀୟ ନାରୀ, ଯିଏ ସମସ୍ତ ଦୁଃଖ ଝଞ୍ଜା ମଧ୍ୟରେ ଥିଲେ ସ୍ଥିତପ୍ରଜ୍ଞା । ଏକ ପବିତ୍ର ସେବା ମନୋଭାବ ନେଇ ସେ ଡ଼ାକ୍ତରୀ ଶିକ୍ଷା କରିଥିଲେ ଏବଂ କାର୍ଯ୍ୟ କ୍ଷେତ୍ରରେ ରୋଗୀମାନଙ୍କ ପ୍ରତି ଯେପରି ଆନ୍ତରିକ ସ୍ନେହ, ସହାନୁଭୂତି ଓ ସମବେଦନା ପ୍ରକାଶକରି ନିଜର କର୍ତ୍ତବ୍ୟ ସମ୍ପାଦନ କରୁଥିଲେ ତାହାର ପଟାନ୍ତର ନାହିଁ । ସେ ବେଳରେ ଜଣେ ଉଚ୍ଚକୋଟୀର ଡ଼ାକ୍ତର ଭାବରେ ସେ ନିଜକୁ ପ୍ରତିଷ୍ଠିତ କରି ପାରିଥିଲେ ।

କୁନ୍ତଳା କୁମାରୀଙ୍କର ସାରସ୍ୱତ ବିଭବ ଦୃଷ୍ଟି ନିକ୍ଷେପ କଲେ ଜଣାଯାଏ, ତାଙ୍କର ପ୍ରତିଭା ହେଉଛି ବହୁମୁଖୀ, ନିରନ୍ତର ଚେଷ୍ଟା ଓ ସାଧନାବଳରେ ନୂତନର ସୃଷ୍ଟିହୁଏ । ମାତ୍ର ପ୍ରକୃତ ସାଧନା ପାଇଁ ଅନୁକୂଳ ପରିବେଶ ମଧ୍ୟ ନିତ୍ୟାନ୍ତ ଜରୁରୀ । ତେବେ ସେତେବେଳେ ନାନା ପ୍ରତିକୂଳ ପରିବେଶ

ମଧ୍ୟରେ ସେ ଯେଉଁ ସାହିତ୍ୟ ସୃଷ୍ଟି କରି ଯାଇଛନ୍ତି, ତାହା ଅତ୍ୟନ୍ତ ଉନ୍ନତ ଓ ସୁଉପଯୋଗୀ, ବିଭିନ୍ନ ଭାଷା ଶିକ୍ଷା କରିବା ପାଇଁ ତାଙ୍କର ପ୍ରବଳ ଆଗ୍ରହ ଥିଲା ଏବଂ ସେ ଓଡ଼ିଆ, ଇଂରାଜୀ ଓ ହିନ୍ଦୀ ଭାଷାରେ ଅନେକ ଗୁଡ଼ିଏ କବିତା ଲେଖିଛନ୍ତି । ତାଙ୍କର ପ୍ରତିଟି ରକ୍ତ କଣିକାରେ ଜାତୀୟତା ଓ ଦେଶମାତୃକା ଭାବର ସ୍ପନ୍ଦନ ଖେଳି ଯାଉଥିଲା, ଯାହା ତାଙ୍କର ଦେଶାତ୍ମବୋଧକ କବିତା ଗୁଡ଼ିକରେ ସ୍ପଷ୍ଟଭାବରେ ପ୍ରତିଫଳିତ ହୋଇଛି । ଅନ୍ୟପକ୍ଷରେ ତାଙ୍କର ଅସଫଳ ପାରିବାରିକ ଜୀବନର ଅନେକ ଦୁଃଖଦ ଘଟଣାକୁ ନେଇ ସେ ଯେଉଁ କବିତା ଗୁଡ଼ିକ ରଚନା କରିଛନ୍ତି, ତାହା ଅତ୍ୟନ୍ତ ହୃଦୟ ସ୍ପର୍ଶୀ । ତାଙ୍କ ରଚିତ ଉପନ୍ୟାସରେ ବିଭିନ୍ନ ଚରିତ୍ର ମାଧ୍ୟମରେ, ସେ ଦେଶର ତତ୍କାଳୀନ ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଚିନ୍ତା ଧାରାର ସ୍ୱରୂପ ପ୍ରକାଶ କରିବାରେ ସକ୍ଷମ ହୋଇଛନ୍ତି । ସବୁଧର୍ମକୁ ସମ୍ମାନ ଦେଉଥିଲେ ମଧ୍ୟ କୌଣସି ଧର୍ମର ଦୋଷ, ଦୁର୍ବଳତା, ଅନ୍ଧବିଶ୍ୱାସ ଓ କୁସଂସ୍କାରକୁ ସେ ଆଦୌ ପସନ୍ଦ କରୁନଥିଲେ ଏବଂ ବାଲ୍ୟବିବାହ ଓ ଜାତି ଭେଦର ସେ ଘୋର ବିରୋଧୀ ଥିଲେ । ଏହା ତାଙ୍କର ଲେଖାଗୁଡ଼ିକରୁ ସ୍ପଷ୍ଟ ଅନୁମିତ ହୁଏ । ମୋଟ ଉପରେ ସେ ଜଣେ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନା ନାରୀକବି, ବିପ୍ଳବୀକବି, ଚିରସ୍ମରଣୀୟ ଔପନ୍ୟାସିକା ଏବଂ ଦୂରଦୃଷ୍ଟି ସମ୍ପନ୍ନା ଲେଖିକା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପରିଶେଷରେ ତାଙ୍କ ମହିମାମୟ ତ୍ୟାଗପୂତ ଜୀବନର କାହାଣୀ ତଥା ସକ୍ରିୟ ଜୀବନ ଦର୍ଶନର ପ୍ରାସଙ୍ଗିକତା ଓ ମହତ୍ତ୍ୱର ମୂଲ୍ୟ ଯେ ଆଜିର ରୁଗ୍‌ଣ ଓ ଅବକ୍ଷୟ ସମାଜରେ କେତେ ମୂଲ୍ୟବାନ୍ ତାହା ସମସ୍ତେ ଉପଲବ୍ଧି କରିବା ଉଚିତ୍ । ସର୍ବଶୂନ୍ୟ ଅବସ୍ଥାରୁ ସର୍ବପୂର୍ଣ୍ଣ ଅବସ୍ଥାକୁ ଉଠିବା ଲାଗି ଯେଉଁ ଦୁଃସାହସିକ ପଦକ୍ଷେପ ସେ ନେଇଛନ୍ତି ତାହା ସମଗ୍ର ନାରୀ ଜାତି ପାଇଁ ପଥପ୍ରଦର୍ଶକ ହୋଇରହିଥିବ ଏଥିରେ ସନ୍ଦେହ ନାହିଁ ।

*ବରିଷ୍ଠ ଅଧ୍ୟାପିକା, ରସାୟନ ବିଭାଗ*
*ମହର୍ଷି ମହାବିଦ୍ୟାଳୟ, ଭୁବନେଶ୍ୱର*



# ଅନନ୍ୟା

ଭାରତୀ ମହାନ୍ତି ।

ମାନବ ଜୀବନ ନୁହଁଇ କେବଳ
ବର୍ଷମାସ ଦିନଦଣ୍ଡ,
"କର୍ମେ ଜୀଏଁ ନର କର୍ମ ଏକା ତାର
ଜୀବନର ମାନଦଣ୍ଡ ।"
(ପଣ୍ଡିତ ଗୋପବନ୍ଧୁ ଦାସ)

ଉପର୍ଯୁକ୍ତ ପଂକ୍ତି ନାରୀକବି କୁନ୍ତଳା କୁମାରୀ ସାବତଙ୍କ କ୍ଷେତ୍ରରେ ସ୍ପଷ୍ଟ ପ୍ରମାଣିତ, ୧୯୦୦ରୁ ୧୯୩୮ ମାତ୍ର ୩୮ ବର୍ଷର ଜୀବନ କାଳ ମଧ୍ୟରୁ ଶୈଶବ ସମୟତକ ବାଦ୍ ଦେଲେ ଯେଉଁ କେତୋଟି ବର୍ଷ ଏହି ମହାନ୍ ସାଧିକା ଏ ମର ସଂସାରରେ ଆତଯାତ ହୋଇଛନ୍ତି ସେତିକି କାଳ ମଧରେ ଅମର ଲେଖନୀର ଅମୃତ ଧାରାରେ ନିଜକୁ ମଧ ଅମର କରି ଯାଇଛନ୍ତି ।

କବି ପ୍ରାଣ ମଣିଷର ସୃଷ୍ଟି କୌଣସି ସାମାଜିକ, ଭୌଗଳିକ ବା ଐତିହାସିକ ସୀମା ମଧରେ ସୀମିତ ହୋଇ ରହେନା, ବର୍ମାରୁ ଦିଲ୍ଲୀ, ପୁଣି କଟକରେ ରହଣି; ଖ୍ରୀଷ୍ଟଧର୍ମାବଲମ୍ବୀ ପରିବାରରେ ଜନ୍ମ, ସାମାଜିକ ଜୀବନରେ ହିନ୍ଦୁ ଧର୍ମାବଲମ୍ବୀ ପରିବେଶରେ ପ୍ରବେଶ; ବ୍ୟକ୍ତିଗତ ଜୀବନରେ ପ୍ରଣୟ, ସଫଳତା ବିଫଳତା ଇତ୍ୟାଦି ବିଚିତ୍ର ଘଟଣାବଳୀ ଯେଉଁ ଅନୁଭୂତିର ବୈଭବ କୁନ୍ତଳା କୁମାରୀଙ୍କୁ ପ୍ରଦାନ କରିଛି ତା'ର ଶବ୍ଦମୟ ରୂପ ଉପନ୍ୟାସ, କବିତା ରୂପରେ ସୃଷ୍ଟି ହୋଇ କାଳୋତ୍ତୀର୍ଣ୍ଣ କାବ୍ୟ ସୌନ୍ଦର୍ଯ୍ୟର ଭଣ୍ଡାର ସୃଷ୍ଟି କରିଯାଇଛି । ପ୍ରେମର ଅତିନ୍ଦ୍ରିୟ ସ୍ୱରୂପର ଝଲକ କୁନ୍ତଳା କୁମାରୀଙ୍କର କବି ପ୍ରତିଭାର ଚରମ ପରାକାଷ୍ଠା ପ୍ରକାଶିତ ହୋଇଛି । ସଂସାରର ସମସ୍ତ ଉପାଦାନରେ ସେହି ଅଦୃଶ୍ୟ ସତ୍ତାର ସ୍ପର୍ଶ ଅନୁଭୂତି କବି ପ୍ରାଣକୁ ଆହ୍ଲାଦିତ କରିଛି । ରୂପରେ, ଗଂଧରେ, ଛନ୍ଦରେ ତାର ଉପସ୍ଥିତିର ଅନୁଭବ ପ୍ରକାଶ କରିବାକୁ ଯାଇ କବି ଲେଖିଛନ୍ତି :-

ସେତ ଆକାଶେ ପବନେ ରାଜେ ବନେ ବନେ
ରାଜେ ସେ ସରିତ ସଲିଳେ ।
ସେତ ଉଷାର ଉରସେ ନିଶିଥ ଆକାଶେ
ବିରାଜେ ସାଗର ଶଇଳେ ।
ସେତ ପୁରୁଷ ଆନନେ ନାରୀ ଅପଘନେ
ଶିଶୁର ବଦନ କମଳେ
ତାର ମୋହନ ମଧୁର ଅନନ୍ତ ମହିମା
ଜ୍ୟୋତି ହ୍ରଦଧାରା ଉଜଳେ" ।

ଝରା ଶେଫାଳୀର କ୍ଷୁଦ୍ର ରୂପରେ କବି ଅନୁଭବ କରିଛନ୍ତି ଈଶ୍ୱରୀୟ ସତ୍ତା ଓ ବିଶ୍ୱାସ । ସଂସାରରେ କେହି ନ ବୁଝିଲେ ବି ସେ ଅର୍ଥାତ ପରମ ପୁରୁଷ ଯେ ଆତ୍ମାର ନିବେଦିତ ପ୍ରେମକୁ ଠିକ୍ ବୁଝିବ ଏହି ପ୍ରଗାଢ଼ ବିଶ୍ୱାସର ବାର୍ତ୍ତା ପ୍ରକାଶିତ ହୋଇଛି । ସେଥିପାଇଁ ଧର୍ମଗ୍ରନ୍ଥ ବା ଧର୍ମଯାଜକମାନଙ୍କ ପ୍ରଚାରିତ ବା ସ୍ୱୀକୃତ ନିୟମ ବା ରୂପର ମାଧ୍ୟମ ଆବଶ୍ୟକ ହୋଇ ନାହିଁ । ବରଂ କୁନ୍ତଳାଙ୍କ ମତ - ହରି, ହରି, ପ୍ରଭୁ, ପ୍ରଭୁ କୃଷ୍ଣ ଖ୍ରୀଷ୍ଟ ନାମ ସବୁତ ଅର୍ଚ୍ଚନା ସବୁତ ସାଧନା, ସବୁ ସତ୍ୟ ମିଥ୍ୟା ନୁହେଁ । କେବଳ ସେହି ମହାପ୍ରଭୁଙ୍କ ଶ୍ରୀ ଚରଣରେ ଆତ୍ମ ସମର୍ପଣହିଁ ଆତ୍ମାର ଏକମାତ୍ର ଲକ୍ଷ୍ୟ ଓ କର୍ତ୍ତବ୍ୟ ।

ଜୀବନ ଈଶ୍ୱରଙ୍କର ଏକ ଲକ୍ଷ୍ୟହୀନ ସୃଷ୍ଟି ନୁହେଁ । ବରଂ ଈଶ୍ୱରଙ୍କ କାର୍ଯ୍ୟ ସାଧନରେ ନିମିତ୍ତମାତ୍ର ହେବାର ମହତ୍ ଉଦ୍ଦେଶ୍ୟରେ ଜୀବନର ସୃଷ୍ଟି । ସେଇଥିପାଇଁ କବି ସ୍ପଷ୍ଟ ସ୍ୱରରେ କହିଛନ୍ତି :-

''ଜୀବନ ନୁହେଁ ମୋ ସପନ ଛଳନା
ଜୀବନ ଆନନ୍ଦମୟ ହେ
କରମ ଲାଗି ମୁଁ ଜନମ ଲଭିଛି
କରମେ ଲଭିବି ଜୟ ହେ ।''

କବିଙ୍କ ଈଶ୍ୱରଭକ୍ତି କେବଳ ନିଜ ଆତ୍ମାର ସ୍ୱାର୍ଥ ସାଧନକାରୀ ମୁକ୍ତିପାଇଁ ଉଦ୍ଦିଷ୍ଟ ନୁହେଁ । ବରଂ ସ୍ଥଳ ବିଶେଷରେ ତାହା ଦେଶ ଓ ଜାତିପାଇଁ ମଙ୍ଗଳମୟ ଭାବ ଆକାରରେ ଝରିଛି । ଗାଂଧୀବାଦୀ ଆଦର୍ଶ ଈଶ୍ୱରୀୟ ଭକ୍ତି ସହ ମିଶି ପବିତ୍ର ସ୍ୱର ଝଂକାର ସୃଷ୍ଟି କରିଛି । ତାଙ୍କ ଭାଷାରେ-

ଦେଶ ଆମ ଧର୍ମ କର୍ମ ଜପମାଳି
ଅରଟରେ ଚକ୍ର ଜୀବନ ସଞ୍ଚାଳି

ଭୌଗୋଳିକ ସୀମାରେଖା ବାହାରକୁ ଯାଇ ମଧ୍ୟ କୁନ୍ତଳା ନିଜ ଜନ୍ମମାଟି ଓଡ଼ିଶାର ପାଣି ପବନକୁ ଗଭୀର ପ୍ରେମ କରୁଥିଲେ । ତାଙ୍କ କବିତାରେ ''ମହାନ ବୀର ସ୍ରୋତ'' ଛନ୍ଦମୟ ଶବ୍ଦରୂପରେ ପରିଣତ ହୋଇଛି । ପୁଣି ଓଡ଼ିଆ ପୁଅର ବୀରତ୍ୱ ଓ ମୁକ୍ତିକାମୀ ସଂଗ୍ରାମୀ ଚେତନାର କବିତା ସୃଷ୍ଟିକରି କବି ଗାଇଛନ୍ତି ।

ବଢ଼ିଲାଗି ଯା ଦିଶିବ ବାଟ କରିବି
ଲାଟ କିଲଟରେ ସଂଗେ ନିଶ୍ୱେ ଲଢ଼ିବି ।
ରାଇଜ ଲୋକଙ୍କୁ ମେଳି କରିବି ଆଣି
ଆମ ଦୁଃଖ କଥା ତାଙ୍କ ଆଗେ ବଖାଣି ।

ଅନ୍ୟ ପକ୍ଷରେ ଓଡ଼ିଆ ପୁଅ ବଂଚିବାର ସଂଗ୍ରାମରେ ନିଜ ସ୍ଥିତି ପାଇଁ ଗାଁ ମାଟି ଛାଡ଼ି ବିଦେଶ ଯାଇଛି । ବିରହିଣୀ ପଲ୍ଲୀବଧୂର ସ୍ୱର 'ଓଡ଼ିଆ ବୋହୂର କାନ୍ଦ' ଆକାରରେ କବିତାରେ

ପରିଣତ ହୋଇଛି । ପ୍ରସଙ୍ଗ କ୍ରମେ ଓଡ଼ିଆ ପୁଅକୁ ଅନ୍ୟ ଦେଶର ବୁଲି ମଜୁରିଆ ନହୋଇ ନିଜ ମାଟିକୁ ଫେରି ବଞ୍ଚିବାର ଉପାୟ ସ୍ଥିର କରିବାକୁ ଆହ୍ୱାନ କବିଙ୍କ ଓଡ଼ିଆ ପ୍ରାଣର ସ୍ପଷ୍ଟ ପରିଚୟ ଦିଏ ।

ପ୍ରାୟ ସମସାମୟିକ ତଥା ପାରମ୍ପରିକ ଓଡ଼ିଆ ସାହିତ୍ୟ ଓ ସାହିତ୍ୟିକଙ୍କର ସମକକ୍ଷ ଭାବେ କୁନ୍ତଳାକୁମାରୀ ନିଜ ରଚନା ମାଧମରେ ପ୍ରତିଷ୍ଠିତ । ନାରୀ ଭାବରେ କୋମଳତା କିମ୍ବା ତତ୍କାଳୀନ ସାମାଜିକ ରକ୍ଷଣ ଶୀଳତା ପ୍ରତିବନ୍ଧକ ଭାବେ ଭାରତୀୟ ଆଦର୍ଶ, ଧର୍ମ ସବୁକ୍ଷେତ୍ରରେ ନିଜ ଲେଖନୀର ସଫଳତା ପ୍ରମାଣିତ ହୋଇଛି ।

ଅଞ୍ଜଳି, ଉଚ୍ଛ୍ୱାସ, ଅର୍ଚ୍ଚନା, ସ୍ଫୁଲିଙ୍ଗ, ଓଡ଼ିଆଙ୍କ କାନ୍ଦଣା, ଗଡ଼ଜାତ କୃଷକ, ପ୍ରେମଚିନ୍ତାମଣି ଇତ୍ୟାଦି କବିତା ଓ କାବ୍ୟ ବ୍ୟତୀତ ଗଦ୍ୟ କ୍ଷେତ୍ରରେ କୁନ୍ତଳାଙ୍କ ଅବଦାନ ଉଲ୍ଲେଖନୀୟ । ରଘୁ ଅରକ୍ଷିତ, ଭ୍ରାନ୍ତି, ନଅତୁଣ୍ଡି, କାଳିବୋହୂ, ପରଶ ମଣି ଇତ୍ୟାଦି ଉପନ୍ୟାସ କୁନ୍ତଳାଙ୍କ ଜୀବନ ଓ ଜଗତ ସହ ପ୍ରତ୍ୟେକ୍ଷ ତଥା ଗଭୀର ସଂପର୍କର ଜ୍ୱଳନ୍ତ ଉଦାହରଣ, । ଓଡ଼ିଶାର ସ୍ୱଳ୍ପଶିକ୍ଷିତ ତଥା ମଧବିତ୍ତ ଶ୍ରେଣୀର ଜୀବନ ଚିତ୍ର ସହ ସାଧାରଣ ମଣିଷର ଅସୁମାରୀ ଜଞ୍ଜାଳକୁ ସରଳ ସହଜ ସ୍ୱାଭାବିକ ରୂପ ପ୍ରଦାନ କରି ଏହି ପୁସ୍ତକ ଗୁଡ଼ିକ ଓଡ଼ିଶାର ଜାତୀୟ ଜୀବନର ଜୀବନ୍ତ ଇତିହାସରେ ପରିଣତ ହୋଇଛନ୍ତି ।

ଏକାଧାରରେ ଗଭୀର ଭକ୍ତି, ଆଶାବାଦ, ଆଦର୍ଶ ବୋଧ, ଦେଶାତ୍ମ ବୋଧ, ପ୍ରଗତି ଓ ପରମ୍ପରାର ମଧୁର ସମନ୍ୱୟରେ କୁନ୍ତଳା ଓଡ଼ିଆ ସାହିତ୍ୟକୁ ଯେପରି ଋଦ୍ଧିମନ୍ତ କରିଛନ୍ତି ଏବଂ ତତ୍ ସହିତ ଉଦାର ବିଶ୍ୱଜନୀନତା ଓ ସରଳ ସ୍ୱାଭାବିକ ସହଜତାର ମିଶ୍ରଣରେ ସୃଷ୍ଟି ଗୁଡ଼ିକ ଅନନ୍ୟ ହୋଇଛନ୍ତି । ସେ ପ୍ରମାଣ କରିଛନ୍ତି, କବି ଅସୀମର ଅଧିକାରୀ , ଜୀବନକାଳ ବା ଭୂଗୋଳର ସୀମାରେଖାରେ ଅବଦ୍ଧ ନୁହେଁ । ବରଂ ଏକ ମୁକ୍ତ ଆତ୍ମା । ସମୟର କୌଣସି ସୀମାରେ ସେ ଆବଦ୍ଧ ହେବା ଅସମ୍ଭବ । ଆମପାଇଁ ସେ ଏବେବି ଆଦର୍ଶ ତଥା ଅନୁସରଣୀୟ ।

*ଅଧାପିକା*
*ମହର୍ଷି ମହିଳା ମହାବିଦ୍ୟାଳୟ*
*ଭୁବନେଶ୍ୱର*



# ଓଡ଼ିଆ ସାହିତ୍ୟରେ କୁନ୍ତଳା କୁମାରୀଙ୍କ ଅମଳିନ ପ୍ରତିଭା

ବୀଣା ପଟ୍ଟନାୟକ

ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଓଡ଼ିଶାରେ ନାରୀ ଶିକ୍ଷାର ଅନଗ୍ରସରତା ହେତୁ ଲେଖିକାଙ୍କ ସଂଖ୍ୟା ଅତି ନଗଣ୍ୟ ଥିଲା । ଏପରିସ୍ଥିତିରେ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିଥିବା ସେହି ମହୀୟସୀ ଲେଖିକାମାନଙ୍କ ମଧ୍ୟରେ କୁନ୍ତଳା କୁମାରୀ ସାବତ ଅଗ୍ରଗଣ୍ୟ । ମାତ୍ର ଅଠତିରିଶ ବର୍ଷ ଜୀବନ କାଳ ମଧ୍ୟରେ କୁନ୍ତଳା କୁମାରୀ ମାତ୍ର ବାରବର୍ଷ ଜୀବନ ବିତେଇଥିଲେ ଓଡ଼ିଶାରେ । ଜୀବନର ଏହି ସ୍ୱଳ୍ପ ସମୟ ମଧ୍ୟରେ ଓଡ଼ିଶାର ଲୋକ ସଂସ୍କୃତି ପରିବେଶ, ଚାଲିଚଳଣ ଓ ସାହିତ୍ୟିକ ବାତାବରଣ ସହ ତାଙ୍କର ସଂପର୍କ ନିବିଡ଼ ନଥିଲେ ମଧ୍ୟ ନିଜର ସାହିତ୍ୟିକ ଅନୁରାଗ, ଭାବଧାରା, ଧୀ-ଶକ୍ତି, ସ୍ଥିତ ପ୍ରଜ୍ଞା ଓ ସୃଷ୍ଟି ପ୍ରତିଭା ଫଳରେ କୁନ୍ତଳା କୁମାରୀ କାବ୍ୟଗ୍ରନ୍ଥ - ଅଂଜଳୀ, ଅର୍ଚ୍ଚନା, ସ୍ଫୁଲିଙ୍ଗ, ପ୍ରେମଚିନ୍ତାମଣି, ଓ ଉପନ୍ୟାସ - ରଘୁ ଅରକ୍ଷିତ, କାଳୀବୋହୂ, ନଅତୁଣ୍ଡି, ଭ୍ରାନ୍ତି, ପରଶମଣି, ରଚନା କରି ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି । ପରବର୍ତ୍ତୀ କାଳରେ କୁନ୍ତଳା କୁମାରୀ - ଫକୀରମୋହନଙ୍କ ଦ୍ୱାରା ଅଧିକ ପ୍ରଭାବିତ ହୋଇଥିଲେ । ଫକୀରମୋହନଙ୍କ ପରବର୍ତ୍ତୀ ଉପନ୍ୟାସ ରଚୟିତା ଭାବେ କୁନ୍ତଳା କୁମାରୀ ପ୍ରତିଷ୍ଠା ଅର୍ଜନ କରିଛନ୍ତି । କୁନ୍ତଳା କୁମାରୀଙ୍କ ଉପନ୍ୟାସ ସମୂହର ଚରିତ୍ର ସବୁ ବିପ୍ଲବଧର୍ମୀ, ପ୍ରଗତିଶୀଳ, ସଂସ୍କାର ଧର୍ମୀ, ମନେ ହୁଏ । ନାରୀ ଚରିତ୍ର ଚିତ୍ରଣରେ ଲେଖିକା ଦକ୍ଷତାର ପାରଦର୍ଶିତା ପ୍ରଦର୍ଶନ କରିଛନ୍ତି ।

ଭ୍ରାନ୍ତି :-

'ଭ୍ରାନ୍ତି' ଉପନ୍ୟାସରେ କୁନ୍ତଳା କୁମାରୀ ସାମାଜିକ ଜୀବନକୁ ଚିତ୍ରଣ କରିଛନ୍ତି । ଭ୍ରାନ୍ତି ଗଳ୍ପଦୃଷ୍ଟିରୁ ଅଧିକ - ସୁଖପାଠ୍ୟ । ଏଥିରେ ଶେଫାଳୀ ଓ ଅନଙ୍ଗ ମୋହନଙ୍କ ପାରସ୍ପରିକ ଆକର୍ଷଣ, ଉତ୍କଣ୍ଠା, ଚକ୍ରାନ୍ତକାରୀଙ୍କ ଦ୍ୱାରା ମାନସିକ ବିଭ୍ରାନ୍ତ ପ୍ରଦର୍ଶନ କରି ଲେଖିକା ଶେଷରେ ସେମାନଙ୍କର ପୁର୍ନମିଳନ କରାଇ ଉପନ୍ୟାସଟିର ନାମକରଣ ସାର୍ଥକତା ପ୍ରତିପାଦନ କରିଛନ୍ତି । ଉପନ୍ୟାସରେ ପ୍ରତ୍ୟେକ ଚରିତ୍ର ନିଜ ନିଜର ଭୁଲ୍ ବୁଝିପାରି ସେମାନେ ଶେଷରେ ଅନୁତାପ କରିଛନ୍ତି । ଉପନ୍ୟାସର ପରିସମାପ୍ତି ଆନନ୍ଦମୁଖର ମିଳନାତ୍ମକ ଘଟାଇ ଲେଖିକା ସମାଜରେ ନାରୀ ଚରିତ୍ରର ମହାନ ବୈଶିଷ୍ଟ୍ୟତା ପ୍ରମାଣିତ କରିଛନ୍ତି । ଔପନ୍ୟାସିକା ଗଳ୍ପ ମାଧ୍ୟମରେ ଇଂରାଜୀ ଶିକ୍ଷାର ବିକାଶ ଘଟିଥିବା ପ୍ରକାଶ କରିଛନ୍ତି । ସମାଜର ଏକ ନିଛକ ସତ୍ୟ ଘଟଣାକୁ ଆଧାର କରି ସମଗ୍ର ଉପନ୍ୟାସଟି ପର୍ଯ୍ୟବେସିତ । ଏହି ଉପନ୍ୟାସଟିରେ ମୁଖ୍ୟ ଚରିତ୍ର ଭାବରେ ଅନୁ ଓ ଶେଫାଳୀ ଏବଂ ପାର୍ଶ୍ୱ ଚରିତ୍ର ରୂପେ ପିତା ହରିହର, ମାତା ଇନ୍ଦୁମତୀ, ସାଥୀ ମାଳତୀ, ନଟବର, ନନ୍ଦକିଶୋର, ସାନନ୍ଦ, ଚିତ୍ରଣ କରାଯାଇଛି । ହରିହର, ଇନ୍ଦୁମତୀଙ୍କ ଚରିତ୍ର ମାଧ୍ୟମରେ ଅତ୍ୟନ୍ତ ସ୍ନେହ ଦୟା, ମାୟା, ଆଦର୍ଶମୟ ଦାମ୍ପତ୍ୟ ଜୀବନର ଏକ ସୁସ୍ପଷ୍ଟ ଚିତ୍ର ପରିବେଷଣ କରିଛନ୍ତି । ଉପନ୍ୟାସରେ ଅନୁର ଶେଫାଳୀ ପ୍ରତି ସ୍ନେହ, ସମ୍ବେଦନଶୀଳ ମନୋଭାବ, ସମଗ୍ର ଉପନ୍ୟାସଟିକୁ ଅଧିକ ସୁଖ୍ୟ ପାଠ୍ୟ କରାଇପାରିଛି ।

ନଅତୁଣ୍ଡୀ :-

''ନଅତୁଣ୍ଡୀ'' ଲେଖିକାଙ୍କର ଏକ ସଫଳ ସାର୍ଥକ ଉପନ୍ୟାସ । ଏହି ଉପନ୍ୟାସରେ ଲେଖିକା ଓଡ଼ିଶାର ପଲ୍ଲୀ ଗ୍ରାମର ଗୋଟିଏ କଳିହୁଡ଼ି ନାରୀ ନଅତୁଣ୍ଡୀର ଚରିତ୍ର ଚିତ୍ରଣ କରିଛନ୍ତି । ଏହି ଉପନ୍ୟାସରେ ଲେଖିକା ନାରୀ ଶିକ୍ଷାର ବିକାଶ ଓ ପ୍ରସାର, ପରଦା ପ୍ରଥାର ଉଚ୍ଛେଦ, ସମାଜରେ କୁସଂସ୍କାର ଦୂରୀକରଣ ନିମନ୍ତେ ଅନୁପ୍ରାଣୀତ ହେବାପାଇଁ ତାଙ୍କର ବଳିଷ୍ଠ ଲେଖନୀ ଚାଳନା କରିଛନ୍ତି । ଜମିଦାର କୌଶଳରେ ରତନୀକୁ ବିବାହ କରି ତାକୁ ମାଡ଼ ମାରି ତାର ଉଦଣ୍ଡୀ ପ୍ରକୃତିକୁ ବଦଳାଇ ପାରିବା କଥା ଲେଖିକା ଏହି ଉପନ୍ୟାସରେ ଚିତ୍ରଣ କରିଛନ୍ତି । ରତନୀକୁ ଶିକ୍ଷିତା କରାଇବା ଉଦ୍ଦେଶ୍ୟରେ ଜମିଦାର ବାବୁ ଘରକୁ ମାଷ୍ଟ୍ରାଣୀ ଆଣି ପାଠ ପଢ଼ାଇ ତାକୁ ଶିକ୍ଷିତା କାରାଇଛନ୍ତି । ରତନୀ ଇଂରାଜୀ ଭାଷା ଶିଖିବା ସହିତ ଅରଟରେ ସୁତା କଟା, ଲୁଗାବୁଣା ବୁଣି ମଧ୍ୟ ଶିଖିଲା । ଔପନ୍ୟାସିକା 'ନଅତୁଣ୍ଡୀ' ଉପନ୍ୟାସରେ ଶିକ୍ଷିତ ଲୋକମାନଙ୍କୁ ବିଦେଶୀ ବସ୍ତ୍ର ବର୍ଜନ ସାଙ୍ଗକୁ ଅରଟରେ ସୁତାକାଟି ଲୁଗା ବୁଣି ପିନ୍ଧି ନିଜେ ସାବଲମ୍ବୀ ଓ ଆତ୍ମନିର୍ଭରଶୀଳ ହେବାକୁ ଉପଦେଶ ଦେଇଛନ୍ତି । ଏହି ଉପନ୍ୟାସଟିରେ ଲେଖିକାଙ୍କର ସ୍ୱଦେଶ ପ୍ରୀତି, ସ୍ୱାବଲମ୍ବୀ ଭାବଧାରା ସଂପୂର୍ଣ୍ଣ ଭାବରେ ପରିଲକ୍ଷିତ ହୁଏ ।

''କାଳୀବୋହୂ'':-

''କାଳୀବୋହୂ'' ଉପନ୍ୟାସରେ ଲେଖିକା ବିଧବା ଲକ୍ଷ୍ମୀର ଦୁଃଖ ଦୁର୍ଦ୍ଦଶା ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ସମାଜ ସଂସ୍କାରକ ଚନ୍ଦ୍ରୋଦୟ ବାବୁଙ୍କ ସହ ବିବାହ କରାଇ ସମାଜରେ ବିଧବା ବିବାହ ପ୍ରଚଳନର ଏକ ସୁସ୍ପଷ୍ଟ ଚିତ୍ର ଆଙ୍କିଛନ୍ତି, ଏହି ଉପନ୍ୟାସରେ ଲେଖିକା ସମାଜ ସଂସ୍କାରକ ଚନ୍ଦ୍ରୋଦୟ ବାବୁଙ୍କ ଚରିତ୍ରର ମହାନ ଉଦାରତା, ଆଦର୍ଶକୁ ବେଶ ସୁନ୍ଦର ନିଖୁଣ ଭାବରେ ବର୍ଣ୍ଣନା କରିଛନ୍ତି । ଉପନ୍ୟାସଟିରେ ଲେଖିକା ଓଡ଼ିଆ ରମଣୀର ଦୁଃସାହସିକତା ବିଷୟରେ ଲେଖିଛନ୍ତି । ''ଦଣ୍ଡୀ ଓଡ଼ିଆ ରମଣୀ ହୋଇ ସୁବିସ୍ତୀର୍ଣ୍ଣ କଳିଙ୍ଗ ରାଜ୍ୟର ସାମ୍ରାଜ୍ଞୀହୋଇଥିଲେ ।

''ପରଶମଣି'':-

''ପରଶମଣି'' ଉପନ୍ୟାସରେ ଲେଖିକା ଓଡ଼ିଆ ସମାଜରେ ଶାଶୁ ନଣନ୍ଦଙ୍କ ବୋହୂ ପ୍ରତି ଅନାଦାର ଅତ୍ୟାଚାର ଭାବ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ସହରୀଜୀବନ ପ୍ରତି ଶିକ୍ଷିତ ବ୍ୟକ୍ତିମାନଙ୍କର ପ୍ରବଳ ଆଗ୍ରହ ବୃଦ୍ଧି କଥା ଉପସ୍ଥାପନ କରିଛନ୍ତି । ଏହି ସାମାଜିକ ବ୍ୟାଧିର ସମାଧାନ ଏକ ସ୍ନେହ, ସୌହାର୍ଦ୍ଦ ପୂର୍ଣ୍ଣ ବାତାବରଣ ମଧ୍ୟରେ ଏକ ସୂତ୍ର ମଧ୍ୟ ବାହାର କରିଛନ୍ତି। ଲେଖିକା ଏହି ଉପନ୍ୟାସଟିରେ ''ଯାହା ଫଳରେ ପାରିବାରିକ ଶାନ୍ତି ଫେରି ଆସିଛି ସ୍ୱାଭାବିକ ଭାବରେ'' ଏହି ଉପନ୍ୟାସରେ ଦିଅର- ବୃନ୍ଦାବନର ଚରିତ୍ର ଅତି ଅସାଧାରଣ ଏବଂ ତ୍ୟାଗ, ସେବା, ଦୟାର ମୂର୍ତ୍ତିମନ୍ତ ପ୍ରତୀକ ସଦୃଶ । ଦୁଃଖ, ଗଞ୍ଜଣାରୁ ରକ୍ଷା ପାଇବା ପାଇଁ ବୃନ୍ଦାବନ କ୍ରୋନ୍ତ କରି ଲଳିତାକୁ ତାର ବାପ ଘରକୁ ନେଇଯାଇ ଭାଇ ପାଖରେ ପହଞ୍ଚାଇ ଦେଇଛି । ଦିଅର ବୃନ୍ଦାବନ ତାର ଜୀବନକୁ ଜଳାଞ୍ଜଳି ଦେଇ

ନିଜେ ଚିଉସନ କରି ପୁଣି ବିବାହ ନ କରି ନିଜ ଭାଇର ପିଲାମାନଙ୍କୁ ମଣିଷ କରିବାରେ ପ୍ରାଣ ପଣେ ଚେଷ୍ଟା କରିଛି । ଶେଷରେ ଶାଶୁ ନିଜର ଦୋଷ ବୁଝିପାରି ବୋହୂପ୍ରତି ଶ୍ରଦ୍ଧା, ସ୍ନେହ, ଅନୁକମ୍ପା ପ୍ରଦର୍ଶନ କରିଛନ୍ତି । ଏବଂ ନିଜର ଦୋଷ ପାଇଁ ସେ ମଧ୍ୟ ନିଜେ ଅନୁତପ୍ତା ଥିଲେ । ଏହି ଉପନ୍ୟାସଟିରେ ଲେଖିକା ଗାଉଁଲି ଭାଷାରେ ଲେଖିଛନ୍ତି -

''ହାଣ୍ଡିତ ନବଚୂନା ହେଲା, ବନର ସର ସର ଶବ୍ଦ,
ପ୍ରତିବିମ୍ବଟିଏ ଫୁଟିଛି, ଦୁଧବୋଳା ଅଳତା,
ଅଧୁଆରୀ ଗଣ୍ଡିଏ ପାଣ୍ଡୋଟି ଚୂଟି ରହେନା ।

ଏହି ଉପନ୍ୟାସରେ ନାରୀ ଚରିତ୍ରର ମାଧୁର୍ଯ୍ୟ ଓ ବୈଶିଷ୍ଟ୍ୟ ପରିଲକ୍ଷିତ ହୋଇଥାଏ ।

''ରଘୁ ଅରକ୍ଷିତ :-

ରଘୁ ଅରକ୍ଷିତ ଉପନ୍ୟାସରେ ସମାଜରେ ଲୋକମାନେ ସହରୀ ସଭ୍ୟତାରେ ଆକୃଷ୍ଟ ହୋଇ କିପରି ଠକାମୀ, ଚୋରୀ, ଓ ନାନା ପ୍ରକାରର କୁକର୍ମରେ ଲିପ୍ତ ରହିଥାନ୍ତି, ତାହା ଲେଖିକା - ରଘୁ ଚରିତ୍ର ମାଧ୍ୟମରେ ପ୍ରକାଶ କରିଛନ୍ତି । ଶେଷରେ ଜଣେ ଅପରିଚିତା ଅନ୍ୟ ଜାତିର ଝିଅ ମାୟାର ପ୍ରେମ ବନ୍ଧନରେ ଆବଦ୍ଧ ହୋଇ ରଘୁ ତାକୁ ଶେଷରେ ବିବାହ କରି ସୁଖ ଶାନ୍ତିରେ ଜୀବନ ଯାପନ କରିଛି । ଏହି ଉପନ୍ୟାସରେ ଲେଖିକା ସହରୀ ସଭ୍ୟତା ପ୍ରତି ଆକୃଷ୍ଟ ଏବଂ ଜାତିଆଣ ଭେଦଭାବର ଏକ ସୁକ୍ଷ୍ମାତି ସୁକ୍ଷ୍ମ ରୂପ ଦର୍ଶାଇଛନ୍ତି ।

କୁନ୍ତଳା କୁମାରୀଙ୍କ ଉପନ୍ୟାସ ଗୁଡ଼ିକରେ ମୁଖ୍ୟତଃ ଉଚ୍ଚ ମଧ୍ୟବିତ୍ତ ଓ ନିମ୍ନ ମଧ୍ୟବିତ୍ତ ଜନ ଜୀବନର ବାସ୍ତବ ଚିତ୍ର ପ୍ରତିଫଳିତ ହୋଇଛି । ଔପନ୍ୟାସିକା ସମାଜର ବିଭିନ୍ନ ଶ୍ରେଣୀ ମାଧ୍ୟମରେ ଜନ ଜାଗରଣ, ସଂସ୍କାର ଚେତନା, ସଂଚାର ନିମନ୍ତେ ଅଧିକାର ପ୍ରୟାସୀ ହୋଇଛନ୍ତି ।

''ଚିତ୍ରପଟ'':-

ଚିତ୍ରପଟ ଉପନ୍ୟାସଟି ଲେଖିକାଙ୍କର ଏକ ଅସଂପୂର୍ଣ୍ଣ ଉପନ୍ୟାସ । ଏଥିରେ ଲେଖିକା କେବଳ ଜାତିଭେଦ ନୁହେଁ ବରଂ ଧର୍ମଗତ ବିଦ୍ୱେଷକୁ ମଧ୍ୟ ସମାଜରୁ ଦୂରେଇ ଦେବାପାଇଁ ଚେତାବନୀ ଦେଇଛନ୍ତି । ଲେଖିକା ନିଜେ ଜଣେ ବିପ୍ଳବିଣୀ ଥିବାରୁ ଦେଶରେ ନାରୀ ସ୍ୱାଧୀନତା, ନାରୀ ଜାଗରଣର ଅଗ୍ରଦୂତ ରୂପେ ସେ ନିଜ ରଚନାରେ ପ୍ରତ୍ୟେକ ପ୍ରାଣରେ ନବ ଉନ୍ମାଦନା, ସଂଚାର କରିଯାଇଛନ୍ତି ।

କୁନ୍ତଳା କୁମାରୀ ମୁଖ୍ୟତଃ ରହସ୍ୟବାଦୀ କବି ଭାବେ ସୁପରିଚିତା, । କବି ଗୋପବନ୍ଧୁଙ୍କୁ ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ମାନବୀୟ ପ୍ରେମ ଭାବ ସମ୍ବଳିତ, ବିଭୁ ପ୍ରୀତି ମୂଳକ ଓ ବୈପ୍ଳବିକ କବିତାମାନ ରଚନା କରିଥିଲେ । ''ଶେଫାଳୀ ପ୍ରତି'' କବିତା ପାଠ କଲେ ପାଠକ ମନ୍ତ୍ରମୁଗ୍ଧ ହୋଇଯାଏ । ''ମଣି କାଂଚନ'' କବିତାରେ କବିଙ୍କର ଦେଶାତ୍ମବୋଧକ ପ୍ରୀତିର ଗଭୀର ପରିଚୟ ମିଳେ । ସେହିପରି ''ଗଡ଼ଜାତ କୃଷକ'' କବିତାରେ କବି କୃଷକ ଜାତିର ଜୀବନୀ ବର୍ଣ୍ଣନାରେ କୃଷକ

ସ୍ତ୍ରୀର ସତୀତ୍ୱ ରକ୍ଷା କିପରି ଆତ୍ମଦାନ କରିଛି ତାହାର ଏକ ନିଖୁଣ ଚିତ୍ର ପ୍ରଦାନ କରିଛନ୍ତି । ସେହିପରି କବିଙ୍କର କାବ୍ୟ ''ଦୂର୍ବାଦଳ'' ରେ କବି ନିଜ ପ୍ରଣତି ନିବେଦନ କରିଛନ୍ତି ଅଭିଷ୍ଟଙ୍କ ଉଦ୍ଦେଶ୍ୟରେ । ଜୀବନର ଚରମ ଲକ୍ଷ୍ୟ ସାଧନ ସକାଶେ ମନକୁ ସେ ସାଦରେ ଅର୍ପଣ କରିଛନ୍ତି ବିଭୁପଦରେ । କବିଙ୍କର ପ୍ରତ୍ୟେକ କବିତା ପାଠକଲେ କବିଙ୍କର ଭକ୍ତିଭାବରେ ନିଦର୍ଶନ ମିଳେ ।

ପ୍ରେମ ଚିନ୍ତାମଣି କାବ୍ୟରେ କବିଙ୍କ ବିଭୁ ପ୍ରୀତିମୂଳକ ଚିନ୍ତାଧାରା ପରିଲକ୍ଷିତ ହୋଇଥାଏ । ''ଅର୍ଚ୍ଚନା'' କାବ୍ୟରେ କବିଙ୍କର ନୈରାଶ୍ୟମୟ ଜୀବନର ସୂଚନାମିଳେ ।

କବିଙ୍କର ଅଧିକାଂଶ କବିତାରେ ବିଭୁପ୍ରୀତି ମୂଳକ ଓ ସ୍ୱଦେଶପ୍ରୀତି ମୂଳକ ଚିନ୍ତାଧାରାର ପ୍ରତିଫଳିତ ହୋଇଛି । କବି କୁନ୍ତଳା ନିଜ ପ୍ରକୃତି ଚିତ୍ରଣ ମୂଳକ କବିତାରେ ପ୍ରକୃତି ସହ ମାନବୀୟ ପ୍ରୀତିର ସତ୍ତାକୁ ଉଦ୍‌ଘାଟନ କରିଛନ୍ତି । ଏତଦ୍ ବ୍ୟତୀତ କବି କୁନ୍ତଳା ମୁଖ୍ୟତଃ ଗୀତି କବି ଭାବରେ ପ୍ରସିଦ୍ଧି ଲାଭ କରିଛନ୍ତି ।

''କାମିନୀପ୍ରତି'' କବିତାରେ ଭାରତୀୟ ନାରୀର ରୂପ ଗୁଣ ଚିତ୍ରଣରେ ମୁଗ୍ଧ ହୋଇ ତାର ହୃଦୟର କୋମଳତା, ତ୍ୟାଗର ମହତ୍ୱ ପରାକାଷ୍ଠା ବର୍ଣ୍ଣନା କରିବାରେ କବି କୁନ୍ତଳା କୁମାରୀ ଅତି ଭାବ ପ୍ରବଣ ଓ ତତ୍ପର ହୋଇପଡ଼ିଛନ୍ତି, ସେହିପରି ''ଆହ୍ୱାନ'' କବିତାରେ କବି ସମଗ୍ର ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଯୁଦ୍ଧ କ୍ଷେତ୍ରରେ ଯୋଗ ଦେବାପାଇଁ ଆହ୍ୱାନ କରିଛନ୍ତି ।

ଏହିପରି ଭାବରେ କୁନ୍ତଳା କୁମାରୀ ଓଡ଼ିଆ ସାହିତ୍ୟକୁ ବିଶେଷ କରି ଉପନ୍ୟାସ, କବିତା, ଗୀତି କବିତା କ୍ଷେତ୍ରରେ ଖ୍ୟାତି ଅର୍ଜନ କରି ଆମର ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଋଦ୍ଧିମନ୍ତ କରିଯାଇଛନ୍ତି ।

*ସଂପାଦିକା - ''ମୂର୍ଧନ୍ୟା''*
*ତୃ:ଆର:ବି:(ପାର୍ଟ)-୨୨/୪*
*ୟୁନିଟ୍ -୯-ଭୁବନେଶ୍ୱର -୨୨*



# ଯଶସ୍ୱିନୀ କୁନ୍ତଳା କୁମାରୀଙ୍କ ସ୍ମରଣେ

ପ୍ରଶାନ୍ତି ମିଶ୍ର

ବିଶ୍ୱନିୟନ୍ତାଙ୍କ ନିର୍ଦ୍ଦେଶରେ ଧରାପୃଷ୍ଠରେ ଅନେକ ସମୟରେ ଅନେକ ଜ୍ୟୋତିର୍ମୟ ପ୍ରତିଭା ପୂର୍ଣ୍ଣ ଜୀବାତ୍ମା ଜନ୍ମ ନିଅନ୍ତି । କଳୁଷିତ ସମାଜକୁ ସଜାଡ଼ି ଦେବାର ମହତ୍ ଉଦ୍ଦେଶ୍ୟ ତାଙ୍କରି ଠାରେ ସୁପ୍ତ ଅବସ୍ଥାରେ ରହିଥାଏ । ଇତିହାସ ପୃଷ୍ଠାକୁ ଓଲଟାଇଦେଲେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ଥିବା ଅନେକ ଅମ୍ଳାନ ପ୍ରତିଭାପୂର୍ଣ୍ଣ ବ୍ୟକ୍ତିଙ୍କ ଜୀବନୀ ଦେଖିବାକୁ ମିଳେ । ତନ୍ମଧ୍ୟରୁ କୁନ୍ତଳା କୁମାରୀ ଏକ ଅନନ୍ୟ ପ୍ରତିଭା । ସେ ଥିଲେ ପ୍ରଥମ ନାରୀ ଓଡ଼ିଆ ସମାଜର ଯିଏକି ଏକାଧାରରେ ସୁସାହିତ୍ୟିକା, ସମାଜ ସେବିକା, ସଂସ୍କାରକ, ବାଗ୍ମୀ, ଏବଂ ସଂଗ୍ରାମୀ । ତାଙ୍କର ସୁଖ୍ୟାତି ସୁଦୂରପ୍ରସାରି ଏବଂ ଚିର ଅମଳିନ ମଧ୍ୟ । ଓଡ଼ିଶାରେ ନାରୀମୁକ୍ତିର ପ୍ରଥମ ଶଙ୍ଖନାଦ ସେ କରିଥିଲେ । ଅପୂର୍ବ ସାହିତ୍ୟିକ ବ୍ୟକ୍ତିତ୍ୱର ଅଧିକାରିଣୀ ହୋଇ ଯେ ଭଳି ଭାବରେ ସଂସ୍କାରମୁଖୀ ଉପନ୍ୟାସମାନଲେଖି ମଧ୍ୟଯୁଗୀୟ ସମାଜର ପରିବର୍ତ୍ତନ କରିପାରିଥିଲେ ସେଭଳି ଦୃଷ୍ଟାନ୍ତ ଅନ୍ୟତ୍ର ପରିଲକ୍ଷିତ ହୁଏ ନାହିଁ ।

୧୯୦୦ ମସିହାରେ ମଧ୍ୟପ୍ରଦେଶର ବସ୍ତର ଜିଲ୍ଲାରେ ମହୀୟସୀ କୁନ୍ତଳାଙ୍କର ଜନ୍ମ । ସେ ସମୟରେ ରକ୍ଷଣଶୀଳ ସମାଜରେ ଭରି ରହିଥିଲା ନାନା କୁସଂସ୍କାର, କଟକଣା, ଅନ୍ଧବିଶ୍ୱାସ । ସେ ସବୁ ହେଲା - ସ୍ତ୍ରୀ ଜାତି ପ୍ରତି ଅନ୍ୟାୟ, ଅବିଚାର, ଶିକ୍ଷା ଦାନରୁ ସେମାନଙ୍କୁ ବଞ୍ଚିତ, ବାଲ୍ୟବିବାହ, ବାଳୁତ ବିଧବା ଯନ୍ତ୍ରଣା, କନ୍ୟାଶିଶୁ ପ୍ରତି ଅବହେଳା ଓ ଉପେକ୍ଷା ଇତ୍ୟାଦି । ସମାଜର ପରିବର୍ତ୍ତନ ପାଇଁ ଏବଂ ଉଚିତ ନ୍ୟାୟକୁ ସମାଜରେ ସ୍ଥାନ ଦେବାର ଦୃଢ଼ ସଂକଳ୍ପ ନେଇ ବିପ୍ଳବର ବହ୍ନିଶିଖା ଜାଳିଦେଇଥିଲେ ଏଇ ଉଚ୍ଚ ଶିକ୍ଷିତା ଡ଼ାକ୍ତର ମହିଳା କୁନ୍ତଳା କୁମାରୀ । ତାଙ୍କର ମହାନ୍ ଚିନ୍ତାଧାରା ଶାଣିତ ଲେଖନୀର ମୂନ ଥରାଇ ଦେଇଥିଲା ବିପଥଗାମି ଅସାମାଜିକ ଅତ୍ୟାଚାରିତ ହୃଦୟ ମାନ । ଓଡ଼ିଆ ସାହିତ୍ୟର ଗଦ୍ୟ, ପଦ୍ୟ, ପ୍ରବନ୍ଧ ଓ ଉପନ୍ୟାସ ପ୍ରତ୍ୟେକ ବିଭାଗକୁ ସମାଜ ସଂସ୍କାରମୁଖୀ ଚିନ୍ତାଧାରାରେ ଆଧାରିତ କରି ସ୍ୱଦେଶ ପ୍ରେମରେ ପରିପୁତ ଏବଂ ପ୍ଳାବିତ କରି ପାରିଥିଲେ ଅପୂର୍ବ ରଚନାମାନ । ସେ ଥିଲେ ଏକ ବଳିଷ୍ଠ ମେଧାବୀ ବ୍ୟକ୍ତିତ୍ୱ ।

ନାରୀ ଜାତିର ମୁକ୍ତି, ନାରୀ ଜାତିର ଶିକ୍ଷା, ନାରୀ ଜାତିର ସର୍ବାଙ୍ଗୀନ ଉନ୍ନତି ଦିଗରେ ସେ ଯେଉଁ ବଳିଷ୍ଠ ଗୁଣାତ୍ମକ ଉପନ୍ୟାସ ମାନ ଲେଖି ଯାଇଛନ୍ତି ତାହା ଆଜି ନାରୀ ଜାଗରଣର ପଥ ପ୍ରସ୍ତୁତି କରିବାରେ ସାହାଯ୍ୟ ହେଉଛି ଏଥିରେ ସନ୍ଦେହ ନାହିଁ । ମାତ୍ର ୩୮ ବର୍ଷ ଜୀବନକାଳ ମଧ୍ୟରେ ସେ ସର୍ବଭାରତୀୟ ସ୍ତରରେ ଯେଉଁ ବିପୁଳ ସୁଖ୍ୟାତି ଅର୍ଜନ କରିଯାଇଛନ୍ତି ତାହା ପ୍ରକୃତରେ ବିରଳ !!!

ସଂଗ୍ରାମୀ ମନଭାବପୂର୍ଣ୍ଣ ମହୀୟସୀ କୁନ୍ତଳା ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ ପାଇଁ ଯେଉଁ ଆହ୍ୱାନ ଦେଇଥିଲେ ଏବଂ ଏଲାହାବାଦ ବନାରସ ବିଶ୍ୱବିଦ୍ୟାଳୟର ତଥା ଉତ୍ତର ଭାରତର ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ଯେଉଁଳି ଅଗ୍ନି ଗର୍ଭକ ଭାଷଣଦେଇ ଥିଲେ ତାହା ଖୁବ୍ ସୁଖ୍ୟାତି ଓ ସମ୍ମାନ

ତାଙ୍କୁ ଆଣିଦେଇଥିଲା । ସମାଜରେ ନବଜାଗରଣର ସୂତ୍ରଧର ଭୂମିକାରେ ସେ ଅବତୀର୍ଣ୍ଣ ହୋଇଥିଲେ । ହିନ୍ଦୀ ସାହିତ୍ୟରେ ସୁଖ୍ୟାତି ଅର୍ଜନ କରି ଅନେକ ଥର ଉଚ୍ଚ ସମ୍ମାନର ଅଧିକାରିଣୀ ହୋଇଥିଲେ ।

ଲେଖନୀ ମାଧ୍ୟମରେ ଓଡ଼ିଆନାରୀ ତଥା ଓଡ଼ିଆ ଜାତିର ନେତୃତ୍ୱ ତାଙ୍କଭଳି ଆଉ କେହି ନେଇ ନାହାନ୍ତି ବି ନେବେ ନାହିଁ । କ୍ରାନ୍ତିକାରୀ ସାହିତ୍ୟିକା ବଳିଷ୍ଠ ପ୍ରେରଣା ଆଜି ପ୍ରତ୍ୟେକ ଶିକ୍ଷିତା ନାରୀଙ୍କୁ ଆତ୍ମବଳଯୁକ୍ତା କରାଇବାରେ ସାହାର୍ଯ୍ୟ କରୁଛି ଏଥିରେ ଦ୍ୱିମତ ହେବାର ନାହି । ସମାଜରେ ଉଚିତ ନ୍ୟାୟ ପ୍ରତିଷ୍ଠା ଦିଗରେ ସେ ଥିଲେ ଅତି ଅଗ୍ରଣୀ ।

ଏଚ୍ : ଆଇ: ଜି - ସି ୮୯
ବରମୁଣ୍ଡା ହାଉସିଂ ବୋର୍ଡ କଲୋନି
ଭୁବନେଶ୍ୱର - ୭୫୧୦୦୩



ପଢନ୍ତୁ -

ଏକ ପାରିବାରିକ ସାହିତ୍ୟ ତଥା ମହିଳା ପତ୍ରିକା "କସ୍ତୁରୀ"

ଯୋଗାଯୋଗ - ସୁଶ୍ରୀ ସଂଯୁକ୍ତା ମହାପାତ୍ର, ସଂପାଦିକା, "କସ୍ତୁରୀ"
ହରିଡାଖଣ୍ଡି, ବ୍ରହ୍ମପୁର, ଗଞ୍ଜାମ - ୬, ଓଡ଼ିଶା ।

ପଢନ୍ତୁ -

ଔପନ୍ୟାସିକା ସ୍ୱୟଂସିଦ୍ଧା ସ୍ୱର୍ଣ୍ଣପ୍ରଭା ପାଢ଼ୀଙ୍କ ଅଶ୍ରୁଳ ପାରିବାରିକ ଉପନ୍ୟାସ -

୧. ତୃଷ୍ଣା ଶ୍ରାବଣର  ୨. ଅମନାମନ  ୩. ବିଭାବରୀ

ଯୋଗାଯୋଗ - ମାର୍ଫତ - ଶ୍ରୀ ମନ୍ମଥ ପାଢ଼ୀ,
ପାଲୁରୁବଙ୍ଗଳା, ବ୍ରହ୍ମପୁର, ଗଞ୍ଜାମ, ଓଡ଼ିଶା

ପଢନ୍ତୁ -

ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନୀତ ହେବାକୁ ଯୋଗ୍ୟ ବିବେଚିତା ହୋଇଥିବା ଲେଖିକା ଶ୍ରୀମତୀ ପ୍ରସନ୍ନ କୁମାରୀ ଦେବୀଙ୍କ ସାରସ୍ୱତ କୃତି -

୧. ଶ୍ରୀକୃଷ୍ଣ ଭଜନାମୃତ (ଭଜନାବଳୀ)  ୨. ମୋପ୍ରିୟତମ (କବିତା ସଂକଳନ)
୩. ମଦନ ମୋହନ (କାବ୍ୟ)  ୪. କୁସୁମାଞ୍ଜଳୀ (କବିତା ସଂକଳନ)
୫. ଅଶ୍ରୁଳ ନୟନ (ଚଉତିଶା)  ୬. ଆଜିର ଦୁନିଆ (କବିତା ସଂକଳନ)
୭. ଦୁହିତା କୁ ହିତୋପଦେଶ ।

ପ୍ରକାଶ ଅପେକ୍ଷାରେ - ରୁକ୍ମଣୀ (ଉପନ୍ୟାସ), ନିଃସଙ୍ଗ ନୀଡ଼ (ଗଳ୍ପ ସଂକଳନ), ସଂଯୋଗ (କବିତା ସଂକଳନ) ।

ଯୋଗାଯୋଗ - ଇଞ୍ଜିନିୟରିଙ୍ଗ ସ୍କୁଲରୋଡ଼ - ବ୍ରହ୍ମପୁର

ପଢନ୍ତୁ -

ସୁଲେଖିକା ଶ୍ରୀମତୀ ତପସ୍ୱିନୀ ମିଶ୍ରଙ୍କ ଅନବଦ୍ୟ ସାରସ୍ୱତ କୃତି -
"ଭିଜାମାଟିର ଗନ୍ଧ" (କବିତା ସଂକଳନ), "ହଂସ ବିଳାପ" (ଉପନ୍ୟାସ)

ଯୋଗାଯୋଗ - ମାର୍ଫତ - ଶ୍ରୀ ଚିତ୍ତରଞ୍ଜନ ଦାଶ, ନେହେରୁ ନଗର - ୮, ବ୍ରହ୍ମପୁର, ଗଞ୍ଜାମ, ଓଡ଼ିଶା

# କୁନ୍ତଳା କୁମାରୀ ସୃଷ୍ଟି ସମୀକ୍ଷା

ଅଳକା ଚାନ୍ଦ

ଓଡ଼ିଆ ସାହିତ୍ୟ ଇତିହାସ ପୃଷ୍ଠପଟରେ କୁନ୍ତଳା କୁମାରୀଙ୍କ (୧୯୦୦-୧୯୩୮) ସୃଷ୍ଟି ସମୂହକୁ ସୂକ୍ଷ୍ମ ଭାବେ ବିଚାର ବିଶ୍ଳେଷଣ କଲେ ତାଙ୍କର ବିଦ୍ୱତ୍ତା, ପାଣ୍ଡିତ୍ୟ, ତଥା ଗଭୀର ଅନୁଶୀଳନ ବୋଧ ପାଠକର ଚିତ୍ତକୁ ସହଜରେ ସ୍ପର୍ଶ କରିଥାଏ ।

ସ୍ୱଳ୍ପ ସମୟ ଅବଧିରେ ସେ ଯେଉଁ ବିପୁଳ ତଥା ଉତ୍କର୍ଷ ସାହିତ୍ୟ ସୃଷ୍ଟି କରିଛନ୍ତି, ତାହା ତାଙ୍କର ପ୍ରଜ୍ଞା ବୋଧର ପରିଚୟ ...... । ପିତା ଦାନିଏଲ୍ ସାବତ୍ ଏବଂ ମାତା ମନିକାଙ୍କ ଔରସରୁ ୧୯୦୦ ମସିହା ଫେବୃଆରୀ ଆଠ ତାରିଖରେ ବସ୍ତର ଅଞ୍ଚଳରେ, ଜନ୍ମ ଗ୍ରହଣ କରିଥିଲେ କୁନ୍ତଳା କୁମାରୀ ......... । ପାରିବାରିକ ସମସ୍ୟା ହେତୁ ତାଙ୍କ ସାଆନ୍ତ ମା'ଙ୍କ ସହିତ ବାଲ୍ୟକାଳରେ ସ୍ଥାନ ଉଦୟ ସମୟଟି ଅତିକ୍ରାନ୍ତ ହେଉଥିଲା । ଖ୍ରୀଷ୍ଟିଆନ୍ ପରିବାରରେ ଜନ୍ମ ହୋଇଥିଲେ ମଧ୍ୟ କୁନ୍ତଳା କୁମାରୀ ନିଜ ସାଆନ୍ତ ମା'ଙ୍କ ଠାରୁ ଶୁଣିଥିଲେ ହିନ୍ଦୁଧର୍ମର ମହନୀୟ ଆଦର୍ଶ । ପିଲାଟି ଦିନୁ ହିନ୍ଦୁଧର୍ମ ପ୍ରତି ଆକର୍ଷଣ, ସଙ୍ଗୀତ ଗାନ, କବିତା ରଚନା ପ୍ରତି ଅନୁରାଗ, ସାହସ, ଏବଂ ସ୍ୱାଧୀନ ମନୋବୃତ୍ତି, ପରବର୍ତ୍ତୀ ସମୟରେ ତାଙ୍କୁ ଜଣେ ପ୍ରତିକ୍ରୀୟାଶୀଳ ସାହିତ୍ୟିକ ତଥା ସଂସ୍କାରକ ଭାବେ ଗଢ଼ି ତୋଳିଥିଲା...... । ଶିକ୍ଷକ କୈଳାସ ଚନ୍ଦ୍ର ରାଓଙ୍କର ବ୍ୟକ୍ତିତ୍ୱ ପ୍ରତିଭାରେ ପ୍ରଭାବିତ ହୋଇ, ତାଙ୍କୁ ବିବାହ କରିବାର ସୁନେଲି ସ୍ୱପ୍ନ ଯଦିଓ ବାସ୍ତବରେ ରୂପାୟିତ ହୋଇ ପାରିନଥିଲା, ତଥାପି ବ୍ରାହ୍ମଧର୍ମ ମଧ୍ୟ ଦେଇ ଖ୍ରୀଷ୍ଟିଆନ୍‌ରୁ ହିନ୍ଦୁ ଧର୍ମକୁ ରୂପାନ୍ତରିତ ହେବାର ଦୃଢ଼ ମନସ୍ଥତା ଉଭୟ ହିନ୍ଦୁ ଧର୍ମ ପ୍ରତି ଗଭୀର ଆସକ୍ତି, ଏବଂ ତାଙ୍କ ଦୃଢ଼ ବ୍ୟକ୍ତିତ୍ୱକୁ ସୂଚିତ କରାଇଥାଏ । ବୃତ୍ତିରେ ଡାକ୍ତର ଥିଲେ ମଧ୍ୟ, ତାଙ୍କ କର୍ମମୟ ଜୀବନ ଥିଲା ସାହିତ୍ୟ ସେବା ଓ ସମାଜ ସେବା । କୃଷ୍ଣପ୍ରସାଦ ବ୍ରହ୍ମଚାରୀଙ୍କ ମିଥ୍ୟା ପ୍ରରୋଚନାରେ ପ୍ରଭାବିତ ହୋଇ ତାଙ୍କୁ ସେ ବିବାହ କରିଥିଲେ । ଏଇ ବୈବାହିକ ବନ୍ଧନହିଁ ତାଙ୍କ ପ୍ରତିଭାକୁ କ୍ଷୟିଷ୍ଣୁ ଅବସ୍ଥାକୁ ଆଣିଲା । ସାଂସାରିକ ଜୀବନ ମଧ୍ୟରେ ପେଶି ହେଇ, ସେ ମାତ୍ର ୩୮ ବର୍ଷ ବୟସରେ ମୃତ୍ୟୁ ବରଣ କଲେ । ସେ ସମୟରେ ସାମାଜିକ, ରାଜନୈତିକ, ତଥା ସାଂସ୍କୃତିକ ପୃଷ୍ଠ ଭୂମିକୁ ବିଚାର କଲେ ମନେହୁଏ ଯେ, କୁନ୍ତଳା କୁମାରୀ ହେଉଛନ୍ତି, ଓଡ଼ିଶା ମାଟିରେ ଆକସ୍ମିକ ଭାବରେ ଜନ୍ମ ନେଇଥିବା ସ୍ୱାଧୀନ ଚେତା, ସଂସ୍କାରକାମୀ ଏକ ଅଦ୍ୱିତୀୟାନାରୀ । ତାଙ୍କ ପୂର୍ବରୁ ବା ବହୁବର୍ଷ ପର୍ଯ୍ୟନ୍ତ ମଧ୍ୟ ଏ ଭଳି ଏକ ଶକ୍ତିଶାଳୀ ପ୍ରତିଭାପୂର୍ଣ୍ଣ ଲେଖିକାଙ୍କର ଜନ୍ମ ଏମାଟିରେ ହେଇନାହିଁ କହିଲେ ଅତ୍ୟୁକ୍ତି ହେବନାହିଁ । କୈଳାସ ଚନ୍ଦ୍ର ରାଓଙ୍କର ପ୍ରେରଣା ତଥା ସେଇ ସମୟରେ ପ୍ରଥିତଯଶା ସାହିତ୍ୟିକମାନଙ୍କ ଉତ୍ସାହ ମଧ୍ୟରେ, ସେ ରଚନା କରିଛନ୍ତି ରାଶିରାଶି କବିତା, ପ୍ରବନ୍ଧ, ଉପନ୍ୟାସ । ପ୍ରତ୍ୟେକ ମଣିଷ ଭିତରେ ସୃଜନଶୀଳ କ୍ଷମତା ରହିଛି । ଯିଏ ସେଇ ଆହ୍ୱାନଟିକୁ ଜୀବନରେ ପ୍ରତିପାଦନ କରେ ଏବଂ ଖୁବ୍ ଅନ୍ତରଙ୍ଗ ଭାବେ ସେଇ କ୍ଷମତାକୁ ଉପଯୁକ୍ତ ବିନିଯୋଗକରେ ତା'ର ସୃଷ୍ଟି ସେଇ ପରିମାଣରେ ସର୍ବ ବିଦିତ ହୋଇଥାଏ ।

କୁନ୍ତଳା କୁମାରୀ ଥିଲେ ବହୁପ୍ରତିଭାର ଅଧିକାରିଣୀ । ସେ ଅଳ୍ପ ସମୟ ମଧ୍ୟରେ ତାଙ୍କର କବିତା, ଉପନ୍ୟାସ ନାନାବିଧ ରଚନାରେ ଓଡ଼ିଆ ସାହିତ୍ୟକୁ ଦେଲେ କ୍ରାନ୍ତିକାରୀ ଆହ୍ୱାନ । ସେତେବେଳେ ପାଶ୍ଚାତ୍ୟ ଶିକ୍ଷା ସମ୍ପର୍କରେ ଆସି, ଭାରତୀୟ ମାନଙ୍କ ହୃଦୟରେ ଏକ ପ୍ରକାର ନୂତନ ଜାଗୃତି ଏବଂ ନବୀନ ଚେତନାର ସୂତ୍ର ପାତ ହେଲା । ସେତିକି ବେଳେ କେତେକ ପ୍ରଗତିଶୀଳ ବ୍ୟକ୍ତିଚିନ୍ତାକଲେ ଯେ ବିଶ୍ୱ ପ୍ରଗତି କ୍ଷେତ୍ରରେ, ଭାରତ ବହୁ ନିମ୍ନରେ ଅବସ୍ଥାପିତ । ଏହାର ନିରାକରଣ ପାଇଁ ପ୍ରଥମେ ଦରକାର ନାରୀ ସ୍ୱାଧୀନତା ...... । ଏକ ସୂତ୍ରରେ ହେଲା ଅନେକ ଆନ୍ଦୋଳନ..... । ଯାହାର ପ୍ରମୁଖ ସ୍ୱରଥିଲା - ନାରୀ ଶିକ୍ଷା... ନାରୀ ସ୍ୱାଧୀନତା ... । ଓଡ଼ିଶାର ଏଇ ଆନ୍ଦୋଳନର ପୁରୋଧା ଥିଲେ ଫକୀର ମୋହନ ଓ ପରବର୍ତ୍ତୀ ସମୟରେ କାନ୍ତ କବି ଲକ୍ଷ୍ମୀକାନ୍ତ ମହାପାତ୍ର, କୁନ୍ତଳା କୁମାରୀ ସାବତ, ନନ୍ଦ କିଶୋର ବଳ ଆଦି (ଅନେକ ଲେଖକ ଲେଖିକା ଫକୀରମୋହନଙ୍କ ଅନୁସରଣ କରି ଦେଶରେ ନାରୀ ସ୍ୱାଧୀନତା ପାଇଁ ଏକ ସକ୍ରିୟ ଏବଂ ବଳିଷ୍ଠ ଆନ୍ଦୋଳନ ଆରମ୍ଭ କରିଥିଲେ । ନାରୀ ପୁରୁଷ ମାନଙ୍କ ପରି ଉଚ୍ଚ ଶିକ୍ଷା ଲାଭକରି ବିଭିନ୍ନ କାର୍ଯ୍ୟ କ୍ଷେତ୍ରରେ ଯୋଗଦାନ କଲେ, ଅଭ୍ୟାସ ଓ ଅଧ୍ୟବସାୟ ବଳରେ ପୁରୁଷ ମାନଙ୍କ ପରି, ସେମାନଙ୍କର ପ୍ରତିଭାମଧ୍ୟ ଏଦେଶର ସାହିତ୍ୟ ଓ ସମାଜକୁ ବହୁଭାବରେ ଉଦ୍‌ବୁଦ୍ଧ ଓ ସମୃଦ୍ଧ କରିପାରିବ ; ଏହାର ଜ୍ୱଳନ୍ତ ଉଦାହରଣ ହେଉଛନ୍ତି କୁନ୍ତଳା କୁମାରୀ ।

ସତ୍ୟବାଦୀ ଗୋଷ୍ଠୀ ଯେଉଁ ପ୍ରେରଣା ଓ ଚିନ୍ତାଧାରା ସୃଷ୍ଟି କରିଗଲେ ତାହାରି ପ୍ରଭାବରେ ଉଦ୍‌ବୁଦ୍ଧ ହେଇ ଅନେକ କବି ଓ ଲେଖକ ଓଡ଼ିଆ ଭାଷାରେ ସାହିତ୍ୟ ସୃଷ୍ଟି କରିଥିଲେ । ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ଭାଷାରେ -

''ସେଇ ପ୍ରେରଣାର ରୂପ ଶଂସିତ କାଳରେ ଯେଉଁ କବି ମାନଙ୍କୁ ଅଧିକ ଉଦ୍‌ବୁଦ୍ଧ କରିଛି ସେମାନଙ୍କ ମଧ୍ୟରେ କବି ପଦ୍ମଚରଣ, କବି କୁନ୍ତଳା କୁମାରୀ, କବି ଲକ୍ଷ୍ମୀ କାନ୍ତ ଓ ଗୋଦାବରୀଶ ମହାପାତ୍ର ଅନ୍ୟତମ ।'' ସତ୍ୟବାଦୀର କବି ଗୋଷ୍ଠୀ ଯେତେବେଳେ ଓଡ଼ିଶାର ସୀମା ସରହଦ ଛାଡ଼ି, ମହାଭାରତୀୟ ଭାବନାରେ ନିଜକୁ ନିୟୋଜିତ କଲେ, ସେମାନଙ୍କର ଉତ୍ତର ଦାୟାଦ୍ ଭାବରେ ଏଇ ଚାରିଜଣ କବିଙ୍କୁ ନିଆଯାଇପାରେ । ପରମ୍ପରା ଇତିହାସରେ କୁନ୍ତଳା କୁମାରୀ ହେଉଛନ୍ତି ପ୍ରଥମ ଓଡ଼ିଆ ଲେଖିକା.... ଯିଏ ଏଇ ସମ୍ମାନ ଓ ଗୌରବର ଅଧିକାରିଣୀ । କୁନ୍ତଳା କୁମାରୀଙ୍କ ବାଲ୍ୟ ଓ କୈଶୋର ବର୍ମାରେ ଅତିବାହିତ ହୋଇଥିଲା ପିଲାଟି ଦିନରୁ ତାଙ୍କର ସାହସ, ସ୍ୱାଧୀନ ମନୋବୃତ୍ତି, ତଥା କବି ସୁଲଭ ଦରଦୀ ହୃଦୟର ପରିଚୟ ମିଳିଥିଲା । ସଙ୍ଗୀତଗାନ, କବିତା ରଚନା ପ୍ରତି ତାଙ୍କର ଅନୁରାଗ, ବାଲ୍ୟକାଳରୁହିଁ ଦେଖାଦେଇଥିଲା । ସେ ଥିଲେ ଖୁବ୍ ନିର୍ଭୀକ ଓ ସ୍ୱାଧୀନଚେତା । ରାଷ୍ଟ୍ର ପ୍ରେମରେ ସେ ନିଜକୁ ଉତ୍ସର୍ଗୀକୃତ କରିବାପାଇଁ ସେ ବ୍ରତୀ ଥିଲେ ହେଁ ଜାତୀୟ ଆନ୍ଦୋଳନର ସେ ଜଣେ ସକ୍ରୀୟ କର୍ମୀ ହୋଇପାରି ନଥିଲେ । କୁନ୍ତଳାଙ୍କ ରଚନା ଶୈଳୀ ମୁଖ୍ୟତଃ ବିବୃତିପ୍ରଧାନ ଥିଲା । କବିତାରେ ବସ୍ତୁ ଚିତ୍ରଣ କରିବାର ବାସନା ଓ କବିତାର ସୌନ୍ଦର୍ଯ୍ୟ ସହଜ, ସରଳ ଅଭିବ୍ୟକ୍ତି ଉପରେ ନିର୍ଭର କରୁଥିଲା । ଆବେଗମୟୀ ମନବୃତ୍ତି ସେ କବିତାମାନଙ୍କର ମୁଖ୍ୟସ୍ୱର ।

ଖୋର୍ଦ୍ଧା ରହଣି ଥିଲା କୁନ୍ତଳାଙ୍କର ସର୍ବଶ୍ରେଷ୍ଠ ମୂଲ୍ୟବାନ ସମୟ । ''ଖୋର୍ଦ୍ଧା ଜୀବନ ହିଁ ମୋର କାବ୍ୟ କବିତା'' - ସେ କଳ୍ପନା କରିଥିଲେ । ''ମୋର ଲକ୍ଷେ ଟଙ୍କା ସମ୍ପୂର୍ଣ୍ଣ ହେଉ ମୁଁ ଖୋର୍ଦ୍ଧାର ବରୁଣେଇ ପାହାଡ଼ ତଳେ ଗୋଟିଏ ନାରୀଶିକ୍ଷା ମନ୍ଦିର ଗଢ଼ି ଓଡ଼ିଆ ନାରୀଙ୍କୁ ମୋର କଳ୍ପନା ମତେ ଉତ୍କଳର ଐତିହାସିକ ଦୃଷ୍ଟି କୋଣରୁ ଗଢ଼ିବି ।''

କିନ୍ତୁ କବିଙ୍କ ଆଶା ପୂରଣ ହୋଇ ନାହିଁ । ଜୀବନରେ ଅନେକ ଅର୍ଥ ଉପାର୍ଜନ କରିସୁଦ୍ଧା ଲକ୍ଷେ ଟଙ୍କା ସେ କେବେ ଠୁଳ କରିପାରିନଥିଲେ । କୁନ୍ତଳା କୁମାରୀଙ୍କର ସେତେବେଳର କବିତା ପ୍ରାୟତଃ ପ୍ରେମାସ୍ପଦ କବିତା...

ଶ୍ରୀମତୀ ସରଳା ଦେବୀ କହନ୍ତି - ''କୁନ୍ତଳା କୁମାରୀ ଏକ ତପସ୍ୱିନୀ କବି '' ।

ତାଙ୍କର ବ୍ୟକ୍ତିତ୍ୱ ଥିଲା ଅସାଧାରଣ । ତାଙ୍କର ସୃଜନଶୀଳତା, ଦାନଶୀଳତା, ବିଚକ୍ଷଣ ବୁଦ୍ଧିମତ୍ତା, ଓ ସାଙ୍ଗଠନିକ କ୍ଷମତାର ଅପୂର୍ବ ସମନ୍ୱୟ, ତାଙ୍କୁ ଏକ ଅନନ୍ୟ ସ୍ରଷ୍ଟା ଭାବରେ ସ୍ଥାପିତ କରିଛି । ସାଧାରଣ ନାରୀପରି ତାଙ୍କ ଭିତରେ ଥିଲା ଅହଂକାର, ପରଶ୍ରୀକାତରତା, ଦେହର ବ୍ୟାକୁଳତା....... ।

ତାଙ୍କର ପ୍ରଥମ କବିତା ଏଇମିତି ଥିଲା ଶ୍ରୀହରିଙ୍କ ପାଦପଦ୍ମରେ ସମର୍ପିତ କବିତା.. 'To Justify tyeways of god to man' ଏହାହିଁ ଥିଲା Milton ଙ୍କର କବିତାର ସ୍ୱର - ସେଇ ସ୍ୱର ଅନୁପ୍ରାଣିତ ହୋଇ 'ଉଚ୍ଛ୍ୱାସ' କବିଙ୍କର ଏକ ଶ୍ରୀପାଦପଦ୍ମରେ ସମର୍ପିତ କବିତାଗୁଚ୍ଛ, ଯେଉଁଠି କବିତାର ଛତ୍ରେ ଛତ୍ରେ ଧର୍ମଭାବ, ଈଶ୍ୱର ନିର୍ଭର ଶୀଳତା, ସେବାରେ ଉତ୍ସର୍ଗୀକୃତ ପ୍ରାଣ ବିଭୁପ୍ରେମରେ ଉଦ୍‌ବେଳିତ ହେବାର ଆକାଂକ୍ଷା ପରିସ୍ଫୁଟ ହୋଇଛି । ଶ୍ରୀମତୀ ସରଳାଙ୍କ ମତରେ - କୁନ୍ତଳା କୁମାରୀ ଭାରତର ଜାତୀୟ ଯୁଦ୍ଧବେଳେ ସୈନିକ ନହେଲେ ମଧ୍ୟ ସ୍ୱାଧୀନତା ଯୁଦ୍ଧ ସମୟରେ ଦେଶରେ ଜାତୀୟ ଚାରିଣୀ ରୂପରେ ସୈନିକ ମାନଙ୍କୁ ଉତ୍ସାହିତ କରିଥିଲେ । କୁନ୍ତଳା କୁମାରୀ ଥିଲେ ସେ ଯୁଗର ସବୁଠାରୁ ସଚେତନ କବି । ମାତୃଭାଷା ପ୍ରତି ଗଭୀର ମମତା ଭରି ତାଙ୍କ ଲେଖନୀ ଗାଇଥିଲା ।

ଶ୍ରୀପୟରେ ଯାଯାବର ମାଗେ କନ୍ୟା<br>
ସଫଳ ହେଉ ଜୀବନ<br>
ମାତୃଭାଷା ପୁଷ୍ଟ ତୋଳିଣ ସହସ୍ର<br>
ହେବି ବରେଣ୍ୟ ମହାନ ।

ସବୁଧର୍ମକୁ ସମାନ ମାନ୍ୟତା ଦେଇ କବିଗାଇଥିଲେ ।

କୃଷ୍ଣ କହି କେହି କରେ ଆରାଧନା<br>
ଖ୍ରୀଷ୍ଟ କହି ସେହି କରୁଛି ବନ୍ଦନା<br>
ସବୁତ ଅର୍ଚ୍ଚନା ସବୁତ ସାଧନା<br>
ସବୁ ସତ୍ୟ ମିଥ୍ୟା ନୁହେଁ ।

ପ୍ରଥମେ ଭାବରେ କୁନ୍ତଳା କୁମାରୀ କୈଳାସ ଚନ୍ଦ୍ରଙ୍କ ନିର୍ଦ୍ଦେଶ ଓ ଦର୍ଶନାଦି ଶୁଣି ଲେଖିଲେ । ଏ କବିତାର ନାଁ ଦିଆଗଲା -

'ତାରାପ୍ରତି' .... । କଟକରେ ଗଙ୍ଗା ମନ୍ଦିର ଘରେ ଥିଲା ବେଳେ ତାଙ୍କ ଅଗଣାରେ ଗୋଟିଏ ଶେଫାଳି ଗଛ ଥିଲା । ସେଇ ବୃକ୍ଷଟିକୁ ଦେଖି, କବି ତାଙ୍କର ଶେଫାଳି ପ୍ରତି କାବିତାଟି ରଚନା କରିଥିଲେ ।

କେଉଁଦୂର ତରୁବରେ ଫୁଟିଅଛୁ ଗୋପନେ
ଭୁରୁଭୁରୁ ଗନ୍ଧ ତୋର ଭାସି ଆସେ ପବନେ ........

ଏଥିରେ କବିଙ୍କର ଜୀବନ ଦର୍ଶନ, ଆଶାବାଦ ଆଦିର ଚିତ୍ର ସୁସ୍ପଷ୍ଟ । କ୍ଷୁଦ୍ର ତୁଚ୍ଛ କୌଣସି ବସ୍ତୁ ସଂସାରରେ ମୂଲ୍ୟହୀନ ନୁହେଁ । କବିଙ୍କ ଭାଷାରେ - 'ନୀଚ ମଧ୍ୟେ ଉଚ୍ଚ ସୃଷ୍ଟି ବିଧାତାର ବିଚାର'...... । ଚନ୍ଦ୍ରତାରା, ଶେଫାଳୀ, କାମିନୀ, କମଳ ନବ ବକୁଳ ଆଦି କବିତା - ଉଚ୍ଛ୍ୱାସ ପୁସ୍ତକରେ ପ୍ରକାଶିତ- କବିତା ଗୁଡ଼ିକ ଯୌବନ ସୁଲଭ ।

କୁନ୍ତଳା କୁମାରୀ, କେବଳ ନିଜ ମାତୃଭାଷାରେ ନୁହେଁ, ଇଂରାଜୀରେ ମଧ୍ୟ ଅନେକ ଦେଶାତ୍ମବୋଧକ କବିତା ରଚନା କରିଛନ୍ତି । ସ୍ଫୁଲିଙ୍ଗ ପୁସ୍ତକରେ, ଦେଶର ତରୁଣ ମାନଙ୍କୁ ସେ ଉତ୍ସର୍ଗ କରିଥିଲେ । ପ୍ରାକୃତିକ ବିପର୍ଯ୍ୟୟ, ରୋଗ, ବ୍ୟାଧି, ଦୁଃଖ, ଦାରିଦ୍ର୍ୟ ମଣିଷର ମାନବିକତା ନଷ୍ଟ କରି ପାରେନା... । ଓଡ଼ିଆ ଯେତେ ଦୁଃଖ, କଷ୍ଟ, ଅଭାବ ଅସୁବିଧା ଭୋଗିଲେ ମଧ୍ୟ ତାର ମାନବିକତାକୁ ସେ କେବେ ହରାଏ ନାହିଁ ।

ତେଣୁ କବିଙ୍କର ଆଶାବାଦୀ ପ୍ରାଣ ଗାଉଛି ...

ଶୁଣ ହେ ମଣିଷ ଭାଇ
ଝୁରି ମରିବାକୁ ବୁଡ଼ି ମରିବାକୁ
ମଣିଷ ଜନମି ନାହିଁ ।

ଅମୃତାପ୍ରୀତମ୍ ଆହ୍ୱାନୀ କବିତା ସୃଷ୍ଟି କରି ରାଜକୀୟ ସମ୍ମାନର ଅଧିକାରିଣୀ ହେଉଥିବା ସ୍ଥଳେ, କୁନ୍ତଳା କୁମାରୀଙ୍କର କବିତାର ମୂଲ୍ୟାୟନ ଅବଶ୍ୟ ଏଯାବତ୍ ଯଥାବିଧି ହୋଇପାରିନାହିଁ । କରାଳଗ୍ରାସୀ ବନ୍ୟାର ଚିତ୍ର, ଦାରିଦ୍ର୍ୟର ତାଡ଼ନାରୁ ଓଡ଼ିଶାର ବିଭିନ୍ନ ଜାତିର ଲୋକଙ୍କର ରେଙ୍ଗୁନ ଓ ବର୍ମା ଆଦିର ଯାତ୍ରା .... ମାଳି, କୁଲି, ବେହେରା ଆଦି କାର୍ଯ୍ୟରେ ଓଡ଼ିଆ ନିଜକୁ ନିଯୁକ୍ତ କରନ୍ତି ସୁଦୂର ଦେଶମାନଙ୍କରେ ଓ ନାନା ପ୍ରକାର ମନ୍ଦ ଅଭ୍ୟାସର ଶୀକାର ହୋଇ ବରଣ କରନ୍ତି ଅକାଳମୃତ୍ୟୁ, ଏ ସବୁର ସ୍ପଷ୍ଟ ଚିତ୍ର ସେ ଆଙ୍କିଛନ୍ତି ତାଙ୍କର ବହୁ ସୃଷ୍ଟିର ପତ୍ରରେ -ପତ୍ରରେ । ଓଡ଼ିଆ ଜାତିପାଇଁ କବି କୁନ୍ତଳାକୁମାରୀଙ୍କର ମର୍ମଦାହ, ଦୁଃଖ, ସମବେଦନା, ସମ୍ବେଦନ, ଅନୁଶୋଚନା ଆଦି ରଚନାର ଛତ୍ରେ ଛତ୍ରେ ସୁସ୍ପଷ୍ଟ ....... ।

'ଭ୍ରାନ୍ତି' ଉପନ୍ୟାସ ୧୯୨୩, ଲେଖିକାଙ୍କର ସର୍ବ ପ୍ରଥମ ଉପନ୍ୟାସ । ଏତଦ୍ ବ୍ୟତୀତ ସେ 'ପରଶମଣି', ନଅତୁଣ୍ଡୀ, କାଳୀବୋହୂ, ରଘୁ ଅରକ୍ଷିତ, ଚିତ୍ରପଟ (ଅସଂପୂର୍ଣ୍ଣ) ଉପନ୍ୟାସ ରଚନା କରି, ନାରୀ ଜୀବନର ସୌନ୍ଦର୍ଯ୍ୟ ବୋଧ, ନାରୀପ୍ରତି ସମାଜର ଦୃଷ୍ଟି ଭଙ୍ଗୀ ଓ ସମାଜରେ ନାରୀର ସ୍ଥାନ ସଂପର୍କରେ ବିଷଦ ତଥ୍ୟ ପ୍ରଦାନ କରିଛନ୍ତି ।

ବ୍ୟକ୍ତିଗତ ଜୀବନର ସମସ୍ତ ସଂକଟ, ମନସ୍ତାପ ଠାରୁ ନିଜକୁ ଦୂରେଇ ରଖି ସାହିତ୍ୟ ସାଧନାରେ ମନୋନିବେଶ କରିଥିବା କୁନ୍ତଳାଙ୍କ ସୃଷ୍ଟି ମାନସ ବୈଚିତ୍ର୍ୟପୂର୍ଣ୍ଣ । ସାମାଜିକ କୁସଂସ୍କାର ମାନଙ୍କର ଉଚ୍ଛେଦ ଓ ସୁସ୍ଥ ସମାଜ ଗଠନ ପାଇଁ ପ୍ରଚେଷ୍ଟା.... ତାଙ୍କ ଉପନ୍ୟାସର ମୁଖ୍ୟ ସ୍ୱର । 'ଭ୍ରାନ୍ତି' ଉପନ୍ୟାସ ଶେଫାଳୀ, ଅନୁ ଏବଂ ମାଳତୀ ମଧ୍ୟରେ ତ୍ରିଭୁଜୀୟ ପ୍ରେମ ସଙ୍କଟ ଉପରେ ପର୍ଯ୍ୟବେସିତ । ଜମିଦାର ହରିହର, ନିଜଝିଅ ଶେଫାଳୀକୁ ଅନୁସହିତ ବିବାହ ବନ୍ଧନରେ ବାନ୍ଧିବାକୁ ଆଗ୍ରହୀ... । କିନ୍ତୁ ତାଙ୍କର କର୍ମଚାରୀ ଦୁଷ୍ଟ ବୁଦ୍ଧି ସଂପନ୍ନ ହରିହର ନିଜଝିଅ ମାଳତୀକୁ ଅନୁସହିତ ବିବାହ ଦେବା ପାଇଁ ଚକ୍ରାନ୍ତ କରିଛନ୍ତି । ପରବର୍ତ୍ତୀ ସମୟରେ ଏ ଚକ୍ରାନ୍ତ ଧରାପଡ଼ିଛି ଓ ଅନୁ ସହିତ ହେଉଛି ଶେଫାଳୀର ବିବାହ । ନାରୀ ପ୍ରତି ନାରୀର ଈର୍ଷାତୁର ମନୋଭାବ, ଏଇ ଉପନ୍ୟାସର ମୁଖ୍ୟ ବକ୍ତବ୍ୟ .... ।

'ପରଶମଣି' ଉପନ୍ୟାସରେ ରହିଛି ବୋହୂପ୍ରତି ଶାଶୁ ନଣନ୍ଦଙ୍କ ଅତ୍ୟାଚାର ଏବଂ ଏଇ କାରଣ ବଶତଃ ....ପୁତ୍ରର ଚରିତ୍ର ସ୍ଖଳନ ... । ଲଳିତାକୁ ବିବାହ କରି ବିଦ୍ୟାଧର ଗୋଟିଏ ସୁନ୍ଦର ସଂସାର ଗଠନର ସ୍ୱପ୍ନ ଦେଖିଛି । କିନ୍ତୁ ତାର ମା' ଏବଂ ଭଉଣୀ ଲଳିତାକୁ କଟକରେ ଚାକିରି କରୁଥିବା ସ୍ୱାମୀ ବିଦ୍ୟାଧର ନିକଟକୁ ଛାଡ଼ନ୍ତି ନାହିଁ ।

ଏ ପ୍ରକାର ଅତ୍ୟାଚାରକୁ ସହ୍ୟ କରି ନପାରି ଲଳିତା ଆତ୍ମହତ୍ୟା କରିବାକୁ ପ୍ରୟାସ କରିଛି । କିନ୍ତୁ ଦିଅର ବୃନ୍ଦାବନ କୌଶଳ କ୍ରମେ ଲଳିତାକୁ କଟକରେ ଛାଡ଼ିଦେଇ ଆସିଛି । ଆରମ୍ଭ ହୁଏ ପୁଣି ନବଦମ୍ପତିଙ୍କ ସଂସାର । ବହୁ ସନ୍ତାନର ଜନନୀ ହେଇ ଲଳିତା ନିଜ ସୌନ୍ଦର୍ଯ୍ୟକୁ କ୍ଷୁର୍ଣ୍ଣ କରେ । ମଦ୍ୟ ଏବଂ ରୂପତୃଷ୍ଣାରୁ ସାମୟିକ ସୁଖ ପାଇବା ପାଇଁ ବିଦ୍ୟାଧର ପୁନର୍ବାର ହୁଏ ବେଶ୍ୟାସକ୍ତ । ଏବଂ ପରିଶେଷରେ ଯକ୍ଷ୍ମାରୋଗରେ ପୀଡ଼ିତ ହୋଇ ପ୍ରାଣ ତ୍ୟାଗ କରେ । ଏଇ ଉପନ୍ୟାସରେ ପୁରୁଷର ମାଂସାସୀ ମନୋଭାବ ଏବଂ ବୋହୂ ପ୍ରତି ଶାଶୁର ଅତ୍ୟାଚରେ କିପରି ଗୋଟାଏ ନାରୀମନକୁ ବିଚଳିତ କରିଥାଏ, ତାହା ଦର୍ଶାଯାଇଛି ।

'ନଅତୁଣ୍ଡୀ' ଉପନ୍ୟାସ ଗ୍ରାମ୍ୟ ଅପନ୍ତରାରେ ଥିବା କଳହ ପ୍ରିୟ ନାରୀ ଚରିତ୍ର ଉପରେ ପର୍ଯ୍ୟବସିତ । ମା' ଗେଲ୍ହେଇ ଯେପରି ବିନାକାରଣରେ ପଡ଼ୋଶୀ ମାନଙ୍କ ସହିତ କଳିଉପୁଜାଇବା ଏବଂ ପରଘର ଭାଙ୍ଗିବାର କାମମାନ କରୁଥିଲା ତା'ର ଔରସରୁ ଜନ୍ମନେଇ ଝିଅ ରତନୀ ମଧ୍ୟ ଅନୁରୂପ ଆଦର୍ଶରେ ଦୀକ୍ଷିତ । ଜମିଦାରୀ ତଦାରଖ ସମୟରେ ଜମିଦାର କୃଷ୍ଣଚନ୍ଦ୍ର ରତନୀର ଏହି ସ୍ୱଭାବ ସଂପର୍କରେ ଅବଗତ ହୋଇଛନ୍ତି । ଏକ ନାଟକୀୟ ପରିସ୍ଥିତିରେ ରତନୀକୁ ବିବାହ କରି ତାର ଚରିତ୍ର ସୁଧାରିବାକୁ ପ୍ରାଣପଣେ ଚେଷ୍ଟା କରିଛନ୍ତି । ରତନୀ ଶିକ୍ଷାପାଇଛି । ସ୍ୱଦେଶୀ ଭାବନାରେ ଦୀକ୍ଷିତ ହେଇ ନଅତୁଣ୍ଡୀରୁ ରତ୍ନବତୀ ଦେଇ ଆଖ୍ୟାଲାଭ କରନ୍ତି । ଚରିତ୍ର ଗଠନରେ ପରିବେଶ ଓ ପରିସ୍ଥିତି କିପରି ମୁଖ୍ୟ ଭୂମିକା ଗ୍ରହଣ କରିଥାଏ , ତା'ର ଏକ ଜ୍ୱଳନ୍ତ ପ୍ରମାଣ 'ନଅତୁଣ୍ଡୀ' ଉପନ୍ୟାସ ।

ପୂର୍ବରେ ଥିବା କନ୍ୟାସୁନା ପ୍ରଥା ତଥା ବାଲ୍ୟ ବିବାହ ପ୍ରଥା ବିରୁଦ୍ଧରେ ସ୍ୱରଉତ୍ତୋଳନ କରି କୁନ୍ତଳା କୁମାରୀ ଲେଖିଛନ୍ତି 'କାଳିବୋହୂ' ଉପନ୍ୟାସ । ସାତ ବର୍ଷ ବୟସରେ, ନିଜ ସ୍ୱାମୀ କିଏ

ଜାଣିବା ପୂର୍ବରୁ ବିଧବା ଲକ୍ଷ୍ମୀ ସାମାଜିକ ପରମ୍ପରା ଅନୁସାରେ ଅତ୍ୟାଚାରିତ ହେଉଛି । ଏଇ ସବୁ ଅତ୍ୟାଚାରିତା ପ୍ରତି ଅସହ୍ୟ ହେବାରୁ ଆତ୍ମହତ୍ୟା କରିବା ପାଇଁ ନଈକୁ ଡ଼େଇଁପଡ଼ିଛି । ବୃନ୍ଦାବନ ଆଶ୍ରମର ସ୍ୱାମୀ ସଦାନନ୍ଦ ଏବଂ ଚନ୍ଦ୍ରୋଦୟଙ୍କ ପ୍ରଚେଷ୍ଟାରୁ ତାର ପ୍ରାଣ ରକ୍ଷା ହେଉଛି । ସମାଜ ସଂସ୍କାରକ ଚନ୍ଦ୍ରୋଦୟକୁ ବିବାହ କରି ସମାଜ ମଙ୍ଗଳ କାର୍ଯ୍ୟରେ ମନୋନିବେଶ କରିଛି ।

'ରଘୁ ଅରକ୍ଷିତ' ଉପନ୍ୟାସଟିରେ ବହୁ ଘଟଣାର ବିସ୍ତୃତ ବର୍ଣ୍ଣନା କରାଯାଇଛି । ବିଧବା ବିବାହ ଏବଂ ଦାମ୍ପତ୍ୟ ପ୍ରେମରେ ଭାରତୀୟ ଧର୍ମ ଦର୍ଶନର ଚିରନ୍ତନତା ଏଇ ଉପନ୍ୟାସର ମୁଖ୍ୟସ୍ୱର । ପିତୃ ମାତୃହୀନ ରଘୁ ନିଜକକା ଏବଂ ଖୁଡ଼ୀଙ୍କ ଦ୍ୱାରା ପ୍ରତିପାଳିତ । କଟକ ଜମିଦାର ଚନ୍ଦ୍ରଶେଖରଙ୍କ ଗୁମାସ୍ତା ଭାବେ କାର୍ଯ୍ୟ କରନ୍ତି । ରଘୁ କକାଙ୍କ ଦ୍ୱାରା ନିର୍ଯ୍ୟାତୀତ ହେଉଛି । ଜମିଦାର ଝିଅ ସୀତା ସହିତ ଧୀରେ ଧୀରେ ଆରମ୍ଭ ହେଉଛି ବନ୍ଧୁତା... । ରଘୁ ସହିତ ସୀତାର ବିବାହ ପୂର୍ବରୁ ଅର୍ଥଲୋଭୀ ଜମିଦାର ସୀତାଙ୍କୁ ବିବାହ ଦିଅନ୍ତି ମଦ୍ୟପ, ବେଶ୍ୟାସକ୍ତ ଦିବାକର ମିଶ୍ରସହିତ । ତାପରେ 'ରଘୁ ଘରଛାଡ଼ି ଚାଲିଆସେ କଲିକତା... । ବର୍ମାରେ ହୁଏ କଂପାନୀ ମ୍ୟାନେଜର । ରଘୁ ମାୟା ସହିତ ବିବାହ ହୁଏ । କିନ୍ତୁ ପରବର୍ତ୍ତୀ କାଳରେ ମାୟାର ଘଟେ ଅକାଳ ବିୟୋଗ... । ସୀତା ସ୍ୱାମୀ ଦିବାକର ଓ ପୁଅ ଅମୂଲ୍ୟ ମୋହନଙ୍କ ମଧ ମୃତ୍ୟୁହୁଏ... । ଦୀର୍ଘ ବ୍ୟବଧାନପରେ ସୀତା ଓ ରଘୁର ପୁନଶ୍ଚ ସାକ୍ଷାତ ହୁଏ କଟକରେ । ସୀତାକୁ ବିବାହ ପାଇଁ ମନ ବଳାଏ ରଘୁ । ସୀତା କିନ୍ତୁ ରାଜିହୁଏନା । ସୀତାଠାରୁ ନିରାଶାର ବାଣୀ ଶୁଣି ରଘୁ ନଜକୁ ଦେଶ ସେବାରେ ବ୍ରତୀ କରାଏ ।

କୁନ୍ତଳାଙ୍କ ଉପନ୍ୟାସରେ ରହିଛି ତତ୍କାଳୀନ ସମାଜରେ ପ୍ରଚଳିତ ଥିବା କୁସଂସ୍କାର ଓ ପରମ୍ପରା ବିରୁଦ୍ଧରେ ପ୍ରତିବାଦ । ବୃଦ୍ଧାବସ୍ଥାରେ ମଧ ନିଜର ଯୌନ ଲାଳସାର ପରିତୃପ୍ତି ପାଇଁ ଧନୀୟ ଶ୍ରେଣୀ କରୁଥିଲେ ବହୁ ବିବାହ । ନାରୀନିଜର ନାରୀତ୍ୱକୁ ଓ ପତ୍ନୀତ୍ୱକୁ ବୁଝିବା ପୂର୍ବରୁ ବିଧବା ହୋଇ ସାରାଜୀବନ ବୈଧବ୍ୟ ନିୟମ କାନୁନ୍‌ରେ ପେଶି ହେଉ ଥିବାର ଦୃଶ୍ୟ କୁନ୍ତଳାଙ୍କର ସଂସ୍କାର କାମୀ ମନରେ ସୃଷ୍ଟି କରିଥିଲା ଅଶେଷ ଆନ୍ଦୋଳନ । ନିଜେ ଜଣେ ଖ୍ରୀଷ୍ଟିଆନ୍ ହେଲେ ସୁଦ୍ଧା, ହିନ୍ଦୁଧର୍ମର ଦର୍ଶନ ତଥା ଜଗନ୍ନାଥ ଦର୍ଶନକୁ ଖୁବ୍ ସମ୍ମାନ ଦେଉଥିଲେ । ନିଜ ବୈବାହିକ ଜୀବନର ଅସଫଳତା ତାଙ୍କର ମାନସିକ ଭାରସାମ୍ୟକୁ ମଧ ଟହଲାଇ ଦେଇଥିଲା । ସମାଜରେ ଥିବା ରକ୍ଷଣଶୀଳ ପରମ୍ପରା ବିରୁଦ୍ଧରେ ଯାଇ ଜଣେ ସଫଳ ଲେଖିକା ଭାବରେ ନିଜର ସ୍ଥାନ ସେ ସୁରକ୍ଷିତ ରଖିଥିଲେ ।

କୁନ୍ତଳା କୁମାରୀଙ୍କର ସୃଷ୍ଟି ସମୂହକୁ ଅବଲୋକନ ନକଲେ ତାଙ୍କର ବ୍ୟକ୍ତିଗତ ଜୀବନ ଓ ସାହିତ୍ୟ ଜୀବନ ମଧରେ ଏକ ନିରବଚ୍ଛିନ୍ନ ସମ୍ପର୍କ ରହିଥିବାର ଲକ୍ଷ୍ୟ କରାଯାଏ । କାବ୍ୟ କବିତାରେ ବିଭୂପ୍ରେମର ଯେପରି ଉତ୍ତୋରଣ ଘଟିଛି ଉପନ୍ୟାସ ରେ ସମାଜ ସଂସ୍କାର ସହିତ ମଣିଷ ସ୍ୱରୂପଟି ଯେପରି କବିତା ଗୁଡ଼ିକୁ ମଞ୍ଜୁଳ କରିଛି ସେଇପରି ସମାଜରେ ନାରୀ ଜୀବନର ଇତିବୃତ୍ତିଟି ପରିଲକ୍ଷିତ ହୋଇଛି । ଓଡ଼ିଶାକୁ ବିଶ୍ୱର ଗୋଟିଏ ଉତ୍କର୍ଷ ତଥା ଅନନ୍ୟ ରାଷ୍ଟ୍ର ଭାବେ ଗଢ଼ିବାର ପରିକଳ୍ପନା ତାଙ୍କ ଜାତୀୟତାବୋଧକୁ ସୂଚିତ କରାଏ । ପ୍ରାଚୀନ ନରନାରୀ ଓ ବୀରାରମଣୀ ମାନଙ୍କ ଆଦର୍ଶ ତଥା କର୍ତ୍ତବ୍ୟ ବୋଧରେ ସର୍ବଦା ସେ ଅନୁପ୍ରାଣିତ .... । ତାଙ୍କ ଚେତନାର ଅନୁକ୍ରମରେ କ୍ରମଶଃ ସେ

ପ୍ରାଦେଶିକ ସ୍ତରରୁ ମହାଭାରତୀୟ ଜୀବନ ସ୍ରୋତରେ ନିଜକୁ ସାମିଲ କରିଛନ୍ତି । ନିଜ ବ୍ୟକ୍ତି ଜୀବନର ସମସ୍ତ ଜଞ୍ଜାଳ, ଅସହାୟତା ଅବସ୍ଥା ତାଙ୍କୁ ସର୍ବଦା ବାଧାପ୍ରାପ୍ତ କାରୁଥିଲେ ମଧ, ସେ ସମସ୍ତ ବାଧାକୁ ଏଡ଼ି ତାଙ୍କ ସୃଷ୍ଟି ସମ୍ପଦପ୍ରତି ସଚେତନ ରହୁଥିଲେ ।

ସ୍ୱଳ୍ପ ଜୀବନ କାଳ ମଧରେ, ପାରିବାରିକ ଅଶାନ୍ତି ମଧରେ ସାହିତ୍ୟ ତଥା ସମାଜର ସେବା କରିବା ଅଦ୍ୟାବଧି କ୍ୱଚିତ୍ ନାରୀ ଜୀବନରେ ପରିଲକ୍ଷିତ ହୁଏ । କୁନ୍ତଳା କୁମାରୀ କିନ୍ତୁ ଏକ ଅଦ୍ୱିତୀୟା ପ୍ରତିଭା... ଚିରବନ୍ଦନୀୟା... ସାହିତ୍ୟ ସାରଥି । ତାଙ୍କର ଅମର ଆତ୍ମା ଅଶରୀରୀ ଏ ଜାତିର, ଲେଖିକା ମାନଙ୍କ ନନ୍ଦିଘୋଷକୁ ଆଗେଇ ନବାରେ ସହାୟ ହେଉ ।

ଇ.ଏସ୍ - ୪୪
ବାସନ୍ତିକଲୋନୀ
ରାଉରକେଲା



# ଏକ ଅମ୍ଳାନ ପ୍ରତିଭା

*ନୀରଦ ପ୍ରଭା ପଟ୍ଟନାୟକ*

କୁନ୍ତଳା କୁମାରୀଙ୍କ ସମସାମୟିକ ଶ୍ରୀମତୀ ଅପର୍ଣ୍ଣା ଦେବୀ ତାଙ୍କ କାବ୍ୟକବିତା ଓ ଶ୍ରୀମତୀ ସୀତା ଦେବୀ ଖାଡ଼ଙ୍ଗା ତାଙ୍କର ନାଟକ ମାଧ୍ୟମରେ ସମାଜରୁ କୁସଂସ୍କାର ଦୂର କରିବାକୁ ଚେଷ୍ଟା କରିଛନ୍ତି । ସେହି ପରି ଉତ୍କଳର ନବ ଜାତୀୟ ଚେତନା ଯେତେବେଳେ ଗଣ ଆନ୍ଦୋଳନ ରୂପ ନେଲା; ସେତେବେଳେ ପରଦା ଆଢୁଆଳରୁ ବାହାରି ଶ୍ରୀମତୀ ରମା ଦେବୀ, ଶ୍ରୀମତୀ ସରଳା ଦେବୀ, ଶ୍ରୀମତୀ ମାଳତୀ ଦେବୀ ପ୍ରମୁଖ ଜାତୀୟ ଆନ୍ଦୋଳନରେ ଯୋଗ ଦେଇଥିଲେ ।

କିନ୍ତୁ କୁନ୍ତଳା କୁମାରୀଙ୍କ ବିଷୟ ସଂପୂର୍ଣ୍ଣ ଅଲଗା, ସେ ଏକା ଧାରରେ ଜଣେ କବି ଓ ଔପନ୍ୟାସିକା, ଚିକିତ୍ସିକା, ବିପ୍ଳବିଣୀ ଓ ନାରୀ ପ୍ରଗତିର ପ୍ରତୀକଥିଲେ । ତାଙ୍କ ଲେଖାଗୁଡ଼ିକ ସମାଜ ସଂସ୍କାରମୁଖୀ ଓ ବୈପ୍ଳବିକ ଚିନ୍ତାଧାରରେ ଆଧାରିତ ।

ସେ କବି ହେଲେ ବି ଜଣେ ସ୍ୱାଧୀନତା ସଂଗ୍ରାମୀ ଥିଲେ । ତାଙ୍କ ଦିଲ୍ଲୀ ରହଣୀ ସମୟରେ ସେ ଅନେକ କ୍ରାନ୍ତିକାରୀ ଯୁବକଙ୍କୁ ଆଶ୍ରୟ ଦେଉଥିଲେ ଓ ସେମାନଙ୍କ ସାଙ୍ଗେ ବନ୍ଧୁତା ସ୍ଥାପନ କରିଥିଲେ ।

୧୯୩୧ ମସିହା ମାର୍ଚ୍ଚ ୨୪ ତାରିଖଦିନ ଅମର ଶହୀଦ ଭଗତସିଂହ, ରାଜଗୁରୁ, ଶୁକଦେବଙ୍କ ଫାଶୀ ସଂବାଦ ଶୁଣି ସେ ବିଚଳିତ ହୋଇ ପଡ଼ିଥିଲେ ।

ବିଶେଷରେ ଗାନ୍ଧିଜୀଙ୍କ ଡ଼ାକରାରେ ଅସହଯୋଗ ଆନ୍ଦୋଳନ ଯେତେବେଳେ ତୀବ୍ର ଆକାରରେ ଧାରଣ କରି, ସରକାରୀ କଳକୁ ଅଚଳ କରି ଦେଇଥିଲେ, କୁନ୍ତଳା କୁମାରୀ ଇଂରେଜ ସରକାରଙ୍କୁ ଚାଲେଞ୍ଜ କରି କବିତା ରଚନା କରିଥିଲେ ।

ଆମେ ନାରୀ ଗଣ କଣରୁ ବାହାରି
ଧରିବୁ ଅସହଯୋଗ ତରବାରୀ
ଅହିଂସା ଅସହଯୋଗ ରଣାଙ୍ଗନେ
କର୍ମୀ ହୋଇ ବାହାରିବୁ ଜଣେ ଜଣେ,

ଏଥିରେ ଇଂରେଜ ସରକାର ପ୍ରମାଦ ଗଣିଲେ । କୁନ୍ତଳା କୁମାରୀଙ୍କ ଆହ୍ୱାନ ବହି ବାଜ୍ୟାପ୍ତ କରି ଦେଇଥିଲେ । ସେତେବେଳେକୁ ଭାରତର ଅନ୍ୟ କୌଣସି ନାରୀ କବିଙ୍କ ବହି ବାଜ୍ୟାପ୍ତ ହୋଇନଥିଲା ।

ତାଙ୍କର ମାତ୍ର ୩୮ବର୍ଷ ଜୀବଦଶା ଭିତରେ ପ୍ରଥମ ୧୪ବର୍ଷ କଟିଛି ବର୍ମ୍ମାରେ, ଶେଷ ୧୨ବର୍ଷ ଦିଲ୍ଲୀରେ । ମାତ୍ର ୧୨ ବର୍ଷ କଟାଇଛନ୍ତି ସେ ଓଡ଼ିଶାରେ, ସେତେବେଳେକୁ ଓଡ଼ିଶା ପ୍ରଦେଶ

ଗଠନ ହୋଇନଥାଏ । ଏହି ସ୍ୱଳ୍ପ ସମୟ ଭିତରେ ସେ ଉତ୍କଳର ମାଟି ପାଣି ପବନକୁ କିପରି ଏତେ ଭଲ ପାଉଥିଲେ, ଆଶ୍ଚର୍ଯ୍ୟ ଲାଗେ । ଭାରତରେ ସବୁଆଡ଼େ ଭାଷା ଭିତ୍ତିକ ପ୍ରଦେଶ ଗଠନ ହେଲାବେଳେ ସେ ଓଡ଼ିଶା ପାଇଁ ବ୍ୟସ୍ତ ହୋଇ ପଡ଼ିଥିଲେ, ଓଡ଼ିଶାକୁ ସେ ଏତେ ଭଲ ପାଉଥିଲେ ତାଙ୍କ ଝିଅ ନାଁ ରଖିଥିଲେ କଳିଙ୍ଗ କନ୍ୟା ।

ଦିଲ୍ଲୀରେ ଥିବାବେଳେ ସେ "ଭାରତୀ ତପୋବନ ସଂଘ" ନାମରେ ଏକ ସାହିତ୍ୟ ସଂଘ ପ୍ରତିଷ୍ଠା କରି ଓଡ଼ିଶାର ଶିଳ୍ପ, କଳାକାର, ଲେଖକଙ୍କୁ ଦିଲ୍ଲୀ ଦରବାରରେ ପରିଚିତ କରାଉଥିଲେ ।

ଶେଷ ଜୀବନରେ ସେ ନିୟମିତ ଓଡ଼ିଶାକୁ ଦିଲ୍ଲୀରୁ ଚିଠି ଲେଖୁଥିଲେ । ସେଗୁଡ଼ିକ ଜାତୀୟ ଚେତନାରେ ପୂର୍ଣ୍ଣ । ସେଥିରେ ସେ ଓଡ଼ିଶାରେ କିପରି ନାରୀ ଜାଗରଣ ହେବ, ଅସ୍ପୃଶ୍ୟତା କିପରି ସମାଜରୁ ଦୂର ହେବ, ଓଡ଼ିଶାପ୍ରଦେଶ କେମିତି ଗଢ଼ିହେବ, ସ୍ୱରାଜ୍ୟ କେବେ ଆସିବ, ପୁରୀରେ ନିଖିଳ ଭାରତୀୟ କଂଗ୍ରେସ ଅଧିବେଶନ କିପରି ସଫଳ ହେବ ଇତ୍ୟାଦି ସମସ୍ୟା ନେଇ ଚିଠି ଲେଖୁଥିଲେ ।

ଏହି ଯୋଗଜନ୍ମା ମହିଳା ୧୯୦୦ ଖ୍ରୀଷ୍ଟାବ୍ଦ ଫେବୃଆରି ୮ତାରିଖରେ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳରେ ବସ୍ତର ଷ୍ଟେଟରେ ଜଗଦଲ ପୁରଠାରେ ଜନ୍ମ ଗ୍ରହଣ କରିଥିଲେ । କିନ୍ତୁ ପିତା ଦାନିଏଲ ସାବତ ତାଙ୍କ କର୍ମକ୍ଷେତ୍ର ବର୍ମା ବାଛି ନେବାରୁ କୁନ୍ତଳା କୁମାରୀଙ୍କ ବାଲ୍ୟ ଜୀବନ ବର୍ମାରେ ହିଁ କଟିଥିଲା । କୁନ୍ତଳା କୁମାରୀଙ୍କୁ ବର୍ମା ଦେଶର ନାରୀମାନଙ୍କ ସାହାସିକତା ଓ ବୀରତ୍ୱ ପ୍ରଭାବିତ କରିଥିଲା । କୁନ୍ତଳା ହିନ୍ଦୀ ଭାଷାରେ ଶିକ୍ଷା ଆରମ୍ଭ କରିଥିଲେ ବି ମାତା ମନିକା ଦେବୀ ତାଙ୍କୁ ଓଡ଼ିଆ ପଢ଼ାଇ ଥିଲେ ।

କିନ୍ତୁ କୁନ୍ତଳାଙ୍କୁ ଯେତେବେଳେ ମାତ୍ର ୧୪ ବର୍ଷ ବୟସ ନିର୍ଜ୍ଜନରେ ମାଆଙ୍କ ପ୍ରତି ବାପାଙ୍କର ଲାଞ୍ଛନା ଓ ନିର୍ଯ୍ୟାତନା ତାଙ୍କୁ ବିବ୍ରତ କରି ଦେଇଥିଲା । ପରବର୍ତ୍ତୀ କାଳରେ କୁନ୍ତଳାକୁମାରୀଙ୍କ ଲେଖାରେ ମହିଳାଙ୍କ ବେଦନା, ଅଶିକ୍ଷିତ ନାରୀର ଦୁଃଖ, କୁସଂସ୍କାର ଆଦି ପ୍ରତିଫଳିତ ହୋଇଛି, ସେଥିଲାଗି ତାଙ୍କ ଲେଖାଗୁଡ଼ିକ ଏତେ ହୃଦୟସ୍ପର୍ଶୀ ଓ ଜୀବନ୍ତ ହୋଇ ପାରିଛି ।

ଖୋରଧା, ପାଣି ପବନ କୁନ୍ତଳା କୁମାରୀଙ୍କୁ ଖୁବ୍ ଭଲ ଲାଗିଥିଲା । ବରୁଣେଇ ପାହାଡ଼ ଓ ବିଶେଷରେ ଓଡ଼ିଶା ଇତିହାସ ଦ୍ୱାରା ସେ ଅନୁପ୍ରାଣିତ ହେଲେ । ଓଡ଼ିଆ ଘରର ଚାଲି ଚଳଣ, ପର୍ବ ପର୍ବାଣି ତାଙ୍କୁ ଖୁବ୍ ଭଲ ଲାଗିଲା । ନିଜକୁ ସେ ଜଣେ ପକ୍କା ଓଡ଼ିଆଣୀ ଭାବେ ଗଢ଼ିନେଲେ ।

ପିଲାମାନଙ୍କୁ ଉଚ୍ଚଶିକ୍ଷା ଦେବାପାଇଁ ମନିକା ଦେବୀ କଟକ ଚାଲି ଆସିଲେ । ଖୁବ୍ ଅଭାବ ଅନାଟନ ଭିତରେ, କିନ୍ତୁ କୃତିତ୍ୱ ସହକାରେ କୁନ୍ତଳା କୁମାରୀ ରେଭେନ୍‌ସା ଗାର୍ଲସ୍କୁଲ ପଢ଼ା ସାରିଥିଲେ । ତାପରେ ସେ ମେଡ଼ିକାଲ ସ୍କୁଲରେ ୪ବର୍ଷ ପଢ଼ି ୧୯୨୧ ମସିହାରେ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି ଡାକ୍ତରୀ ପାସକଲେ । ସେହି ୪ବର୍ଷ ଭିତରେ ସେ ୧୫ଟି ପଦକ ଲାଭ କରିଥିଲେ ।

ଆରମ୍ଭ ହେଲା ତାଙ୍କର କର୍ମମୟ ଜୀବନ, ସେ କଟକର ଗଙ୍ଗାମନ୍ଦିର ନିକଟରେ ଗୋଟିଏ ଭଡ଼ାଘରେ ଘରୋଇ ଚିକିତ୍ସା ଆରମ୍ଭ କରିଥିଲେ । କୁନ୍ତଳା କୁମାରୀ ପ୍ରଥମ ଓଡ଼ିଆ ଝିଅ ଯେକି

ଡ଼ାକ୍ତରାଣୀ ହେବାର ଗୌରବ ଅର୍ଜନ କରିଥିଲେ । ଚିକିତ୍ସିକା ହିସାବରେ ଅଳ୍ପଦିନ ଭିତରେ ସେ ଖୁବ୍ ସୁନାମ ଲାଭ କରିଥିଲେ ।

ଡ଼ାକ୍ତିରି ପଢ଼ା ସମୟରେ ହିଁ ତାଙ୍କର ସାହିତ୍ୟ ସାଧନା ଆରମ୍ଭ ହୋଇଥିଲା । ତାଙ୍କ ଲେଖା ସବୁ ଉତ୍କଳ ସାହିତ୍ୟ, ମୁକୁର, ସହକାରରେ ପ୍ରକାଶିତ ହେଉଥିଲା ।

ସେହି ଡ଼ାକ୍ତରୀ ପଢ଼ା ସମୟରେ ତାଙ୍କରି ବ୍ୟକ୍ତିଗତ ଜୀବନରେ ଗୋଟିଏ ଅଶାନ୍ତ ଝଡ଼ ବୋହି ତାଙ୍କୁ ବିବ୍ରତ କରି ଦେଇ ଥିଲା ।

୧୯୨୧ରୁ ୧୯୨୭ ମଧ୍ୟରେ ସେ ଅଞ୍ଜଳି, ଅର୍ଚ୍ଚନା, ସ୍ଫୁଲିଙ୍ଗ ପ୍ରଭୃତି କାବ୍ୟ କବିତା ଲେଖିଥିଲେ, ଓ ଭ୍ରାନ୍ତି, ପରଶମଣି, ନଅତୁଣ୍ଡୀ, କାଳୀବୋହୂ ପ୍ରଭୃତି ଉପନ୍ୟାସ ରଚନା କରିଥିଲେ ।

ସେ କିଛି ଦିନ ରେଡ଼କ୍ରସରେ କାମ କରୁଥିଲେ । କିନ୍ତୁ ୧୯୨୭ରେ ଚାକିରିରୁ ଇସ୍ତଫା ଦେଇ ଦିଲ୍ଲୀଚାଲି ଗଲେ । ସେଠାରେ ସେ ଡାକ୍ତର ଭାବେ ଖୁବ୍ ସୁନାମ ଅର୍ଜନ କଲେ । କିନ୍ତୁ ସାହିତ୍ୟ ସାଧନା ବିଶେଷ ଭାବେ ହୋଇ ପାରୁନଥିଲା । ତେବେ ବି ରଘୁ ଅରକ୍ଷିତ, କବିତା ଗୁଚ୍ଛ ଓ ପ୍ରେମ ତରଙ୍ଗିଣୀ ରଚନା କରିଥିଲେ । ତାଙ୍କ ସାହିତ୍ୟ ସାଧନା ଓଡ଼ିଆ ସାହିତ୍ୟରେ ସୀମାବଦ୍ଧ ନ ହୋଇ ଜାତୀୟ ସ୍ତରକୁ ଯାଇଥିଲା । ସେ ''ବନମାଳା'' ନାମକ ହିନ୍ଦୀରେ କବିତା ବହି ରଚନା କରିଥିଲେ । କ୍ରମେ ସେ ହିନ୍ଦୀ ସାହିତ୍ୟ ଜଗତରେ ପ୍ରସିଦ୍ଧ ଲାଭ କରିଥିଲେ ।

ସେହି ସମୟରେ ଶାରଦା ଆଇନ୍ ପାଇଁ ଗଠିତ ଦିଲ୍ଲୀ ଓ ପଞ୍ଜାବ କମିଟିର ସଭାନେତ୍ରୀ ଥାଇ ନାରୀମାନଙ୍କର ବିବାହ ବୟସ ସଂପର୍କରେ ସ୍ପଷ୍ଟ ମତ ଦେଇଥିଲେ । ସେ ବହୁ ଅନୁଷ୍ଠାନ ସହ ସଂପୃକ୍ତ ଥିଲେ ।

୧୯୩୦ରେ ନିଖିଳ ଭାରତ ଯୁବକ ସଂଘର ସଭାପତି ରୂପେ ମନୋନୀତ ହୋଇଥିଲେ ।

୧୯୩୧ରେ ବୃନ୍ଦାବନ ଗୁରୁକୁଳ ବିଶ୍ୱବିଦ୍ୟାଳୟର ସଭାନେତ୍ରୀ ହୋଇ ହିନ୍ଦୀରେ ଯେଉଁ ଭାଷଣ ଦେଇଥିଲେ, ସମସ୍ତେ ମୁଗ୍ଧ ହୋଇ ଯାଇଥିଲେ ।

୧୯୩୧ରେ ଉତ୍କଳ ନାରୀ ସଂଘର ସଭାନେତ୍ରୀ ହୋଇଥିଲେ ।

୧୯୩୫ରେ ଆଲିଗଡ଼ ଷ୍ଟୁଡେଣ୍ଟ୍ ଫେଡ଼ରେସନର ସଭାପତି ଆସନ ଅଳଙ୍କୃତ କରିଥିଲେ । ଝାନସୀରାଣୀ ଲକ୍ଷ୍ମୀବାଇଙ୍କ ଜୟନ୍ତୀ ଉତ୍ସବରେ ବି ସଭାନେତ୍ରୀ ହୋଇଥିଲେ ।

ସତ୍ୟବାଦୀ ବନ ବିଦ୍ୟାଳୟରେ ତାଙ୍କ ରଚିତ ''ପୂଜା ପଦ୍ଧତି'' ପ୍ରାର୍ଥନା ସଂଗୀତ ରୂପେ ବୋଲା ଯାଉଥିଲା ।

ତାଙ୍କର ଇଚ୍ଛାଥିଲା ବରୁଣେଇ ପାହାଡ଼ ତଳେ ଏକ ନାରୀ ଶିକ୍ଷା ପ୍ରତିଷ୍ଠାନ ଗଢ଼ି ନାରୀ ପ୍ରଗତିରେ ମନଦେଇ ଥାନ୍ତେ । ସେ ଇଚ୍ଛା ଅପୂର୍ଣ୍ଣ ରହିଲା ।

ଦିଲ୍ଲୀଠାରେ ସେ କୃଷ୍ଣପ୍ରସାଦ ବ୍ରହ୍ମଚାରୀଙ୍କୁ ବିବାହ କରିଥିଲେ । କିନ୍ତୁ ଅସଫଳ ଦାମ୍ପତ୍ୟ ଜୀବନ, ତାଙ୍କ ଜୀବନକୁ ଦୁର୍ବିସହ କରିଦେଲା । ସେ ଖ୍ରୀଷ୍ଟିୟାନ୍ ହୋଇଥିଲେ ବି ହିନ୍ଦୁଧର୍ମ ପ୍ରତି ଅନୁରକ୍ତ । ତାଙ୍କର ଅନେକ କବିତା ପ୍ରଭୁଙ୍କ ପାଦ ପଦ୍ମରେ ଅର୍ପିତ ହୋଇଛି ।

ଦିଲ୍ଲୀଠାରେ ହିନ୍ଦୀ ପ୍ରଚାରିଣୀ ସଭା ତାଙ୍କୁ ''ଭାରତ କବୟତ୍ରୀ'' ଉପାଧି ପ୍ରଦାନ କରି ତାଙ୍କୁ ସାରା ଭାରତରେ ପରିଚିତ କରାଇଥିଲେ ।

୧୯୨୫ ମସିହାରେ ପୁରୀଠାରେ ''ମହିଳା ବନ୍ଧୁ ସମିତି'' କୁନ୍ତଳା କୁମାରୀଙ୍କୁ 'ଉତ୍କଳ ଭାରତୀ' ଉପାଧିରେ ଭୂଷିତ କରିଥିଲେ ।

ବିଂଶ ଶତାବ୍ଦୀ ପ୍ରଥମ ଭାଗ ଯାଏ ଆମ ଦେଶରେ ଯେତେବେଳେ ମହିଳାମାନେ ଅନ୍ଧ ବିଶ୍ୱାସ, ଅଶିକ୍ଷା, କୁସଂସ୍କାର ଲାଗି ଅବହେଳିତ ହୋଇଥିଲେ, ସେତେବେଳେ ଏହି ମହିୟସୀ ମହିଳା ତାଙ୍କ ଲେଖା ମାଧ୍ୟମରେ ସମାଜରୁ କୁସଂସ୍କାର ଦୂର କରିବାକୁ ଚେଷ୍ଟା କରିଛନ୍ତି ଓ ଜାତୀୟତାର ବାଣୀ ପ୍ରଚାର କରିଛନ୍ତି । ନିଜେବି ସର୍ବ ଭାରତୀୟ ନାରୀ କବି ହେବାର ଗୌରବ ଅର୍ଜନ କରିଛନ୍ତି ।

ସେ ଆମର ନମସ୍ୟା, ପ୍ରେରଣାର ଉସ୍ତ ।

*ଅନନ୍ତ-ଆଲୋକ*

*କଟକ -୧୨*



# ପ୍ରୀତିମୟୀ ଗୀତିକବି ଉତ୍କଳ ଭାରତୀ କୁନ୍ତଳା କୁମାରୀ

ସୁଶ୍ରୀ ସଂଯୁକ୍ତା ମହାପାତ୍ର

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଉତ୍କଳୀୟ ଜନଜୀବନ ଓ ସାରସ୍ୱତ ଜଗତର ପୃଷ୍ଠଭୂମିରେ ଉତ୍କଳଭାରତୀ କୁନ୍ତଳା କୁମାରୀ ସାବତଙ୍କ ଆବିର୍ଭାବ ଯଥାର୍ଥରେ ଏକ ବିସ୍ମୟ । ଯେତେବେଳେ ଉତ୍କଳୀୟ ଜନଜୀବନର ସାମାଜିକ ଉତ୍‌ଥାନ, ପରଂପରା ଓ ଆଧୁନିକତାର ଦୋଛକି ରାସ୍ତାରେ ପଥଖୋଜିବାରେ ବ୍ୟସ୍ତ ରହି ଏକ ଘଡ଼ିସନ୍ଧି ମୁହୂର୍ତ୍ତ ଦେଇ ଗତି କରୁଥିଲା ସେତେବେଳେ ଏହି ମହିୟସୀ ମହିଳାଙ୍କ ଆଗ୍ନେୟ ବ୍ୟକ୍ତିତ୍ୱ ସତ୍‌ପଥ ପ୍ରଦର୍ଶନ ନିମନ୍ତେ ଶତତ ଚେଷ୍ଟିତ ଥିଲା । ଏବଂ ତତ୍‌କାଳୀନ ପରଦାର ଅନ୍ତରାଳେ ଉତ୍କଳୀୟ ନାରୀର ମୁକ୍ତିସ୍ୱପ୍ନ ଲିଭିଯାଉଥିଲା ବେଳେ କୁନ୍ତଳା କୁମାରୀଙ୍କର ଆବିର୍ଭାବ ।

ବାସ୍ତବିକ ଉତ୍କଳ ଭାରତୀ କୁନ୍ତଳା କୁମାରୀ ସାବତ ସେ କାଳର ଏକ ସୁଦୂର ପ୍ରସାରୀ ନାମ, ଚିତ୍ତାକର୍ଷକ ବ୍ୟକ୍ତିତ୍ୱ, ବିପ୍ଳବର ଜ୍ୱଳନ୍ତ ଅଗ୍ନିଶିଖା, ମାନବିକତାର ଏକ ପରିପୂର୍ଣ୍ଣ ଉତ୍ସ । କ୍ଷଣଜୀବୀ ସ୍ମୃତିରେ ଦ୍ରୁତ ଘଟଣା ପ୍ରବାହ ମଧ୍ୟରେ ତାଙ୍କ ଉଜ୍ଜ୍ୱଳ ଛବି ଆଜି ବିସ୍ମୃତ ହେଲେ ମଧ୍ୟ ବିଲୁପ୍ତ ହୋଇନାହିଁ । ସତେ ଯେମିତି ଆଜିବି ସେ ଚାରଣିକାପରେ ନିରନ୍ନ, ନିବସ୍ତ୍ର, ନିଜ ବାସରେ ପ୍ରବାସୀ ଓଡ଼ିଆଙ୍କୁ ଆଗ୍ନେୟ ଭାଷାରେ ଆହ୍ୱାନ କରୁଛନ୍ତି । ତାଙ୍କ ସ୍ୱତଃସ୍ଫୂର୍ତ୍ତ କାବ୍ୟଛନ୍ଦରୁ ଏବେ ବି ଅପୂର୍ବ ତେଜସ୍ୱିତା ନିସୃତ ହେଉଅଛି । ବାକ୍ ନୁହେଁ ସତେଅବା ଅନିର୍ବାଣ ସ୍ଫୁଲିଙ୍ଗ । ଜାତି ଧମନୀର ଶକ୍ତିଦାୟୀ ଧାତୁଧାରା । ଅତୀତର ମହନୀୟତାରେ ଉର୍ଜ୍ୱସ୍ୱଳ ।

ଓଡ଼ିଆ ସାହିତ୍ୟରେ ମାଧବୀ, ବୃନ୍ଦାବତୀ, ନିଶଙ୍କରାୟରାଣୀ ପ୍ରଭୃତି ଅତୀତରେ ଏବଂ ଏ ଯୁଗର ସରଳା ଦେବୀ, ବିଦ୍ୟୁତ୍ ପ୍ରଭା ଦେବୀ, ତୁଳସୀ ଦେବୀ, ମନୋରମା ମହାପାତ୍ର, ବ୍ରହ୍ମୋତ୍ରୀ ମହାନ୍ତି ପ୍ରଭୃତି ନାରୀକବି ମାନଙ୍କ ମଧ୍ୟରେ ଜୀବନ କାଳରେ ସର୍ବାଧିକ ଚାଞ୍ଚଲ୍ୟ ସୃଷ୍ଟିକାରିଣୀ କୁନ୍ତଳା କୁମାରୀ ଓଡ଼ିଶାରେ ଏକ ରୋମାଞ୍ଚକର କାହାଣୀରେ ପରିଣତ ହୋଇଯାଇଛନ୍ତି । ଯାହା କିନ୍ତୁ ନିର୍ଭର କରିନାହିଁ କେବଳ ତାଙ୍କର କାବ୍ୟ କବିତାର ଗୁଣ ଉପରେ । ଉଭୟ ଗୁଣ ଓ ପରିମାଣରେ ପ୍ଳାବନ କଲାଭଳି ସେପରି ସାହିତ୍ୟିକ ବ୍ୟକ୍ତିତ୍ୱ ଏ ପର୍ଯ୍ୟନ୍ତ ଓଡ଼ିଆ ନାରୀ ଜଗତରେ ସୃଷ୍ଟି ସମ୍ଭବ ହୋଇନାହିଁ ।

ଉତ୍କଳର ଏଇ ନାରୀରତ୍ନ କୁନ୍ତଳା କୁମାରୀଙ୍କର ଅଲୌକିକ ବ୍ୟକ୍ତିତ୍ୱ ଓ ସାରସ୍ୱତ ପ୍ରତିଭା ଉତ୍କଳ ସମେତ ଭାରତବର୍ଷର ଚତୁଃପାର୍ଶ୍ୱରେ ସୌରଭ ପରି ସ୍ୱଳ୍ପ କାଳମଧ୍ୟରେ ବ୍ୟାପିଯାଇଥିଲା । ଯଥାର୍ଥରେ ସେ ନୂତନ ଯୁଗର ଏକ ଏକାଗ୍ର ସାଧିକା ଥିଲେ ଏବଂ ଏକାଧାରରେ ସେ ଜଣେ କବି , ଲେଖିକା, ଚିକିତ୍ସିକା, ମହୀୟସୀ ମହିଳା ତଥା ଆଦର୍ଶ ଗୃହିଣୀ ଭାବରେ ଜଗତ ବିଦିତ ଥିଲେ । କୁନ୍ତଳାଙ୍କ ପରି ଯଶସ୍ୱିନୀ ପ୍ରଜ୍ଞାଶାଳିନୀ, ବୁଦ୍ଧିମତୀ ଏବଂ ବହୁ ପ୍ରତିଭାରେ ବିମଣ୍ଡିତା ନାରୀ ଓଡ଼ିଆ ଜାତୀୟ ଜୀବନରେ ଚିର ଅମର ହୋଇରହିଛନ୍ତି ଓ ରହିବେ ମଧ୍ୟ । ଏହି ଅମର ପ୍ରତିଭାର ପରିଚୟ

ଦେବାକୁ ଯାଇ ବିଛନ୍ଦ ଚରଣ ପଟ୍ଟନାୟକ ଯଥାର୍ଥରେ କହିଛନ୍ତି - ''ବରେଣ୍ୟା କୁନ୍ତଳା ଭଗବତୀ ଭାରତୀଙ୍କର ଜଣେ ପରମାନୁଗୃହୀତା ତନୟା । କେବଳ କବିଯଶ ନୁହେଁ ସେ ବହୁ ଯଶର ଅଧିକାରିଣୀ । ସେ ଜନସେବିକା ତଥା ଦେଶସେବିକା । ତାଙ୍କ ତୁଲ୍ୟା ପ୍ରତିଭାଶାଳିନୀ ଆଦର୍ଶବାଦିନୀ ମହୀୟସୀ ମହିଳା ଯେ କୌଣସି ଦେଶର ଗର୍ବ ଓ ଗୌରବ । ସେ ଆଦର୍ଶବାଦୀର ଆଦର୍ଶ, ଭକ୍ତର ଗୁରୁ ଓ ସ୍ୱାଧୀନତା କାମୀର ନେତ୍ରୀ । ଉତ୍କଳୀୟ ନବଯୁଗ ଉଷାର ସେ ପୂର୍ବଗାମିନୀ ପ୍ରଭାତୀ ତାରା'' ।

ବାସ୍ତବରେ ସତ୍ୟତା ଯେଉଁଠି ପ୍ରତିବନ୍ଧକ ସେଇଠି, ଆଦର୍ଶ ସହିତ ବାସ୍ତବତାର, ବିବେକ ସହିତ ମନର, ପ୍ରତିଭା ସହିତ ପ୍ରତିବନ୍ଧକର ଶତ୍ରୁତା ଚିରଦିନ ଲାଗିରହିଥାଏ । ଯାହା ସହଜେ ଅନୁମାନ କରିହୁଏ କୁନ୍ତଳା କୁମାରୀଙ୍କ ଜୀବନ ଚରିତ୍ରରୁ । ''କୋଇଲା ଖଣିରୁ ହୀରାମୁଣ୍ଡାଟି ପାଇଥିଲି । ତା' ଦେହରେ ମଳି ଲାଗିଥିବାରୁ କତରା ଲୁଗା କାନିରେ ଟିକିଏ ଦଳି ସଫା କରି ଦେଇଛି ମାତ୍ର, ମୋର ସେ ପ୍ରାପ୍ୟ ନୁହେଁ, ତାହା ରାଜାମହାରାଜାଙ୍କ ପ୍ରାପ୍ୟ'' ।

ସ୍ୱାମୀରୂପେ ଗ୍ରହଣ କରିଥିବା କପଟ ମଣିଷ ସହିତ ଅତିବାହିତ କରୁଥିବା ନିରସ, ଶଙ୍କାକୁଳ, ସନ୍ଦେହୀ ଜୀବନ ସହ ନିଜ ଶିଶୁପୁତ୍ରର ଅକାଳ ମୃତ୍ୟୁ କୁନ୍ତଳା କୁମାରୀଙ୍କ ଶେଷ ଜୀବନରେ ଅତି ମାତ୍ରାରେ ଶୋକାକୁଳ କରି ଦେଇଥିଲା । ଏହିପରି ସବୁଦିଗରୁ ମାନସିକ ଦ୍ୱନ୍ଦ୍ୱରେ ରହି ଜୀବନର ସମସ୍ତ ଉତ୍ସାହ ହରାଇଥିଲେ । ତାଙ୍କ ଜୀବନର ପ୍ରତିଟି ମୁହୂର୍ତ୍ତଥିଲା ଗୁରୁତ୍ୱପୂର୍ଣ୍ଣ ଓ ରହସ୍ୟମୟ । ଏହି ବ୍ୟକ୍ତିଗତ ଜୀବନର ଅନୁଭୂତିରୁ ତାଙ୍କର ସାରସ୍ୱତ କୃତି ରସୋତ୍ତୀର୍ଣ୍ଣ ହୋଇ ଉଠିଥିଲା । ସେ ଅମ୍ଳାନ ପ୍ରତିଭାର ଅଧିକାରିଣୀ ଥିଲେ ଏବଂ ନିଜ ବ୍ୟକ୍ତିତ୍ୱର ଚରମ ପରାକାଷ୍ଠାରେ ଜଗତରେ ମହିୟସୀ ମହିଳାଭାବରେ ପ୍ରତିଷ୍ଠିତ ହୋଇଯାଇଥିଲେ । ତେଣୁ ତାଙ୍କର ଏହି ବହୁମୁଖୀ ବ୍ୟକ୍ତିତ୍ୱର ପରିସ୍ଫୁରଣ କ୍ଷଣସ୍ଥାୟୀ ହେଲେ ମଧ୍ୟ ଚମକପ୍ରଦ ଅଟେ । ଓଡ଼ିଆ ସାରସ୍ୱତ ଜଗତରେ କୁନ୍ତଳା କୁମାରୀଙ୍କ ଆର୍ବିଭାବ କ୍ଷଣସ୍ଥାୟୀ ହେଲେ ବି ତାଙ୍କ ଭୂମିକା ଅସାମାନ୍ୟ । ତାଙ୍କ ଭୂମିକା ଅସାମାନ୍ୟ ଓ ଅଦ୍ୱିତୀୟ ଅଟେ । ସେ ସର୍ବମୋଟରେ ଛଅ ଖଣ୍ଡି ଉପନ୍ୟାସ ଯଥା- ଭ୍ରାନ୍ତି, ନ'ତୁଣ୍ଡି, କାଳିବୋହୂ,ପରଶମଣି, ରଘୁଅରକ୍ଷିତ, ଚିତ୍ରପଟ ଏବଂ କବିତା ସଂକଳନ ଅଞ୍ଜଳୀ, ଉଚ୍ଛ୍ୱାସ, ଅର୍ଚ୍ଚନା, ପ୍ରେମ ଚିନ୍ତାମଣି, ସ୍ଫୁଲିଙ୍ଗ, ଆହ୍ୱାନ, ଓଡ଼ିଆଙ୍କ କାନ୍ଦଣା, ଗଡ଼ଜାତ କୃଷକ, ମଣିକାଞ୍ଚନ ପ୍ରଭୃତି ରଚନା କରିଛନ୍ତି ୧୯୨୨ ମସିହାରୁ ୨୬ ମସିହା ମଧ୍ୟରେ । କୁନ୍ତଳା କୁମାରୀଙ୍କ ଏହିସବୁ କୃତିଗୁଡ଼ିକ ମଧ୍ୟରେ ପୂର୍ବଗୌରବାନୁଚିନ୍ତା, ଦେଶାତ୍ମବୋଧ, ପ୍ରକୃତିପ୍ରେମ, ବିଶ୍ୱପ୍ରେମ, ବାଳକନ୍ୟା ବିବାହ ନିରୋଧ, ବିଧବା, ବିବାହ ପରଦାତ୍ୟାଗ, ନାରୀ ଜାଗରଣ, ଅସ୍ପୃଶ୍ୟତା ନିବାରଣ, ଜାତିଭେଦ ବର୍ଜନ ଏବଂ ସମାଜ ଓ ଜାତିର ସର୍ବାଙ୍ଗୀନ ଉନ୍ନତି କଳ୍ପେ ଚିନ୍ତା କରିଥିଲା ଲକ୍ଷ୍ୟ କରାଯାଏ । ତେଣୁ ତାଙ୍କର ସମସ୍ତ ସୃଷ୍ଟି ସାର୍ବଜନୀନ ହୋଇପାରିଥିଲା ଏବଂ କବିତା ଗୁଡ଼ିକର ଛନ୍ଦୋମୟ ସଂଗୀତିକତା ବା ଗୀତିମୟତା ଜନମନ ହରଣ କରି ସାର୍ଥକତା ପ୍ରତିପାଦିତ କରିପାରିଥିଲା ।

ତେବେ କୁନ୍ତଳା କୁମାରୀଙ୍କ ଅଧିକାଂଶ କବିତା ପ୍ରୀତିପୂର୍ଣ୍ଣ । ତାଙ୍କ ଜୀବନରୁ ସାର ନିର୍ଯ୍ୟାସ ଗ୍ରହଣ କରି, ହସକାନ୍ଦ ଦୁଃଖ, ଯନ୍ତ୍ରଣାରେ ପ୍ରେମମୟୀ ହୋଇଉଠିଛି । ଯଦିଓ ସେ ତାହା ଅଧିକାଶଂରେ ବିଶ୍ୱପ୍ରେମରେ ରୂପାନ୍ତରିତ କରିଛନ୍ତି ।

ଊନବିଂଶ ଶତାବ୍ଦୀର ଶେଷ ଭାଗରୁ ଓଡ଼ିଆ କବିତା ଗୀତି କବିତାରୂପେ ନୂତନଭାବ, ନୂତନ ଯୁଗ ଚେତନାରେ ସମୃଦ୍ଧ ହୋଇ ଆତ୍ମପ୍ରକାଶ ପାଉଥିବା ପରିପ୍ରେକ୍ଷୀରେ କୁନ୍ତଳା କୁମାରୀଙ୍କ କବିଜୀବନ ବିକଶିତ ଫଳରେ ତାଙ୍କର ''ଗଡ଼ଜାତ କୃଷକ'' କବିତା ସଂକଳନକୁ ବାଦଦେଇ ଅନ୍ୟ ସମସ୍ତ କବିତା ସଂକଳନ ଗୀତି କବିତା ଶ୍ରେଣୀୟ । ବାସ୍ତବରେ ଗୀତିମୟ ଆତ୍ମଭାବ ମୂଳକ କ୍ଷୁଦ୍ର କବିତାକୁ ଗୀତି କବିତା କୁହାଯାଏ । କବିର ସ୍ୱତଃସ୍ଫୁର୍ତ୍ତ ଆନ୍ତରିକ ଭାବ ଗୀତି କବିତାରେ ଛନ୍ଦୋମୟ ଭାବରେ ପ୍ରକାଶିତ ହେଉଥିବାରୁ ତା'ର ଆକାର କ୍ଷୁଦ୍ର, କାରଣ କବିର ଭାବୋଚ୍ଛ୍ୱାସ ସ୍ୱଳ୍ପକ୍ଷଣ ସ୍ଥାୟୀ ହୁଏ । ସେହିପରି ଗୀତି କବିତା ଚିନ୍ତାମୂଳକ ନୁହେଁ ତେଣୁ ଭାବମୂଳକ ଅଟେ । ତେଣୁ ସାଂଗୀତିକତା, ଅନ୍ତଃମୁଖିନତା, ସ୍ୱତଃସ୍ଫୁର୍ତ୍ତତା ଓ ସଂକ୍ଷିପ୍ତତା ଇତ୍ୟାଦି ସୁଗୁଣ ଏକତ୍ର ଯେଉଁ କବିତାରେ ଲକ୍ଷ୍ୟ କରାଯାଏ ତାକୁ ଗୀତି କବିତା ଆଖ୍ୟା ଦିଆଯାଏ । ଏହି ପରିପ୍ରେକ୍ଷୀରେ କୁନ୍ତଳା କୁମାରୀଙ୍କ କାବ୍ୟସୃଷ୍ଟି ଗୀତି କବିତା ଧାରାରେ ପ୍ରତିପାଦିତ ହୋଇଥାଏ ।

କବିଙ୍କ ପ୍ରେମାପ୍ଲୁତ ହୃଦୟ ମାନବ ଓ ଈଶ୍ୱର ଉଭୟଙ୍କ ପ୍ରେମରେ ସମାନ ଆନ୍ଦୋଳିତ ହୋଇଛି । ତାଙ୍କର ଈଶ୍ୱର ଲିପସା ଓ ପ୍ରଣୟ ପିପାସା ସମଭାବରେ ଗଭୀର । ତେଣୁ ଉଭୟ ପ୍ରେମର ପ୍ରାପ୍ତି ନିମିତ୍ତ ଆକୁଳତା, ସମର୍ପଣ ଭାବ, ଆତ୍ମୋପଲବ୍ଧି ଅନୁଯୋଗ ଓ ଅଭିମାନର ସ୍ୱର ଶୁଣାଯାଏ । ତେଣୁ ପ୍ରେମିକ ତାଙ୍କର ଦେବତାର ଆସନରେ ପ୍ରତିଷ୍ଠିତ । ତାଙ୍କର ନିରାଜନା ପାଇଁ କବି ସଦା ଶତତ ଚେଷ୍ଟିତ । ପ୍ରତୀକ୍ଷାରତ । ପ୍ରେମ, ପ୍ରଣୟ ତାଙ୍କ ଦୃଷ୍ଟିରେ ଏକ ପବିତ୍ର ମହାନ୍ ଭାବାବେଶ ରୂପେ ସ୍ୱୀକୃତ ହୋଇଛି ।

ପ୍ରକୃତରେ 'ଅଞ୍ଜଳୀ', 'ଉଚ୍ଛ୍ୱାସ', 'ଅର୍ଚ୍ଚନା. ''ପ୍ରେମ ଚିନ୍ତାମଣି'' ଇତ୍ୟାଦି କବିତା ସଂକଳନର କବିତା ଗୁଡ଼ିକରେ ଧୂପ, ସୌରଭ, ପୂଜା ପୁଷ୍ପ, ଚନ୍ଦନରେ ସୁରଭିତ ହେଲେବି ତାଙ୍କର ଏଇ ପ୍ରତୀକ୍ଷା କେବଳ ପରମେଶ୍ୱରଙ୍କ ପାଇଁ ନୁହେଁ । ନିଜର ପ୍ରିୟତମ ପ୍ରେମିକ ପାଇଁ ମଧ୍ୟ । ତେଣୁ ସେ ଆକୁଳରେ -

> ''ହେ ହୃଦୟ ସଖା, ଦିଅହୃଦେ ଦେଖା
> ବାନ୍ଧିବି ମୁଁ ପ୍ରେମ-ପାଶେ
> ପାଇବି ବୋଲିମୁଁ ତୁମକୁ ପ୍ରାଣେଶ
> ଆସିଅଛି ଶୂନ୍ୟ ବେଶେ
> ଏ ମନୋମନ୍ଦିରେ ପ୍ରେମର ମଦିରା
> ପିଆଇ କରହେ ବାଇ,
> ତବ ପ୍ରେମ - ସୁଧା- ପାଦେମୋର ଚିତ୍ତ
> ଭୋଳଥାଉ ପ୍ରାଣସାଇଁ ।'' ॥ ୪ ॥

ସେହି ପରି ପ୍ରିୟତମ କବିଙ୍କ ପାଇଁ ଈଶ୍ୱର ପ୍ରଣୟ ତୁଲ୍ୟ ହୋଇଛନ୍ତି -

ମୋ ପ୍ରେମ ଈଶ୍ୱର, ମୋ ପ୍ରାଣ ଈଶ୍ୱର
ଯେତେ ଦେଖେ ତେତେ କରେ ମୁଁ ନିଛର
ହେଲେ ହେଁ ମୁଁ ପାପୀ କ୍ଷୁଦ୍ରତୁଚ୍ଛା ଛାର
ଶ୍ରୀ ଚରଣେ ତା'ର ଅଛି ଅଧିକାର ।''

ପ୍ରେମ ପଥତ କଣ୍ଟକିତ ପଥ, ନିନ୍ଦା ଅପବାଦ, ଦୁଃଖ ଯାତନାର ପଥ, ସେ ପଥରେ ଯେ ଯାଇଛି ସେ ଦୁଃଖ ଅଶ୍ରୁ ହିଁ ପାଇଛି । ତଥାପି ମନ୍ତ୍ର, ତନ୍ତ୍ର, ଜାଣିନଥିଲେ ବି ପ୍ରିୟତମଙ୍କ ମୂର୍ତ୍ତୀ ସମ୍ମୁଖରେ ଜୀବନ ପ୍ରଦୀପ ଜାଳି, ଅଶ୍ରୁ, ଶୋଣିତରେ ପୂଜା ଅର୍ଘ୍ୟ ବାଢ଼ିଥାଏ ଏବଂ ପ୍ରିୟତମ ତା' ପୂଜାରେ ସନ୍ତୁଷ୍ଟ ହୋଇ ତା' ଆଖି ସାମ୍ନାରେ ଉଭାହେଲେ ପ୍ରେମ ଜନିତ ସକଳ ମରମ ବେଦନା ତାକୁ କହିଦେଇ ଆତ୍ମଶାନ୍ତି ଲଭିବା ପାଇଁ ମନସ୍ଥ କରି କବି ଗାଇଉଠିଛନ୍ତି ।

''କାହୁଁ ପାଇବି କନକଦୀପ
ଜୀବନଦୀପ ଜାଳିଛି,
କାହୁଁ ପାଇବି ଅରଘ ଚନ୍ଦନ
ଅଶ୍ରୁ ଶୋଣିତ ଢ଼ାଳିଛି
ନ ଜାଣେ ମନ୍ତ୍ର ତନ୍ତ୍ର କଥା
ଗାଇଯିବି ମୋର ଜୀବନ ବ୍ୟଥା
ସାରା ଦିନ ରାତି ଯେ ହୃଦ ଆରତି
ଯେତେ ମୁଁ ଗୋପନେ ଜାଳିଛି ।
କେତେ ପଦଦଳା ସହିଛି ନିରବେ
କେତେ ଚାହିଁଛନ୍ତି ଅବଜ୍ଞା ଗରବେ
କହିବି ତା' ଆଗେ, ଶୁଣିବ ସରାଗେ
ମୋ କାନ୍ଦଣା ମନେ ଭାଳିଛି ।''

ପୁଣି ଇହକାଳରେ ନହେଲେ ବି ପରକାଳରେ ପ୍ରିୟତମଙ୍କର ପ୍ରେମାମୃତ ପାନକରି ମୁକ୍ତି ଲଭିବାକୁ କବିକାମନା କରିଛନ୍ତି -

''ଭବ ମରୁଭୂମି ଛାଡ଼ିବି ମୁଁ କେବେ
ଯିବି ତବ ପ୍ରେମ - ସଦନେ
ହୃଦୟ ଦହନ ଲିଭିବ ମୋ କେବେ
ବୁଡ଼ି ପ୍ରେମାମୃତ - ଜୀବନେ ''

ପୁଣି କେତେବେଳେ କବିଙ୍କ ଆକୁଳ ଆବାହନରେ ତାଙ୍କ ପ୍ରାଣର ଈଶ୍ୱର ପ୍ରିୟତମ ତାଙ୍କ ହୃଦୟରେ ବିଜେ କରିବାର ସେ ଅନୁଭବ କରିଛନ୍ତି ଫଳରେ ପ୍ରାଣତନ୍ତ୍ରୀ ତାଙ୍କ ସତେ ଯେମିତି ବାଜିଉଠୁଛି -

''ଆସିଛନ୍ତି ଆଜି ପ୍ରାଣ ଈଶ୍ୱର ମୋ
ଦରିଦ୍ର ଏ ପ୍ରାଣ ମନ୍ଦିରେ
ଛତ୍ରିଶ ରାଗିଣୀ ମିଳି ସପ୍ତସ୍ୱରେ
ବାଜି ଉଠୁଛି କି ସଧୀରେ'' ।

ସବୁଯୁଗରେ କବିମାନେ ବ୍ୟକ୍ତିଗତ ଜୀବନର ହତାଶା ଓ ବିଷାଦବାଦ ଯେଉଁପରି ଭାବରେ ନିଜସ୍ୱକାବ୍ୟ କବିତାରେ ଯୋଡ଼ିଛନ୍ତି, କୁନ୍ତଳା କୁମାରୀ ସେହିପରି ନିଜ ଜୀବନର ସମସ୍ତ ଅଶ୍ରୁ-ଅଭିଳାଷ, ହା-ହୁତାଶ, ବ୍ୟର୍ଥତା ଓ ଅବସାଦକୁ ବିଭୁପଦାରବିନ୍ଦରେ ଅଜାଡ଼ିଦେଇ ଆଶାୟିତ ହୋଇ ଉଠିଛନ୍ତି । ତେଣୁ ସେ ନିଜସ୍ୱ କାବ୍ୟ କୃତି ଭିତରେ ସେ ଧରାପଡ଼ିଛନ୍ତି ସାଧିକା ଓ ଭକ୍ତ, ପ୍ରଣୟିନୀ ଓ ପ୍ରେମିକା ରୂପରେ । ଏହାହିଁ କୁନ୍ତଳା କୁମାରୀଙ୍କ କାବ୍ୟ ଚେତନାର ଅନ୍ୟତମ ଆଶ୍ୱାସନା ଓ ପରିଚୟ । ତେଣୁ ସେ ସମସ୍ତ ଛିନ୍ନ ହୃଦୟବୀଣାର ତାରକୁ ସଜାଡ଼ି ଧରି ଆନନ୍ଦଘନ ପ୍ରିୟତମ କଳ୍ପିତ ଦେବତାର ସଂଗୀତ ହିଁ ଗାନକରିଛନ୍ତି ଏବଂ ଏହି ଗାନର ପ୍ରଣାଳୀ ଏତେ ଆନ୍ତରିକ, ଆସକ୍ତ ଓ ବ୍ୟକ୍ତିଗତ ଯେ, ମନେହୁଏ ସତେ ଅବା କୁନ୍ତଳା କୁମାରୀ କୌଣସି ପ୍ରେମାସ୍ପଦ ତରୁଣ ପାଖରେ ନିଜର ରକ୍ତମାଂସ ଅନୁଭୂତିର କାମନାସିକ୍ତ ଆକୁତି ହିଁ ବାଢ଼ୁଛନ୍ତି ଏବଂ ତାଙ୍କରି ଆନନ୍ଦର ପ୍ରତିଫଳନ ନେଇ ସମଗ୍ର ପ୍ରକୃତି ଓ ପରିଚିତ - ପରିଧି ମଧ୍ୟ ଉତ୍ସୋଲ୍ଳକ ହୋଇଉଠୁଛି । ତାଙ୍କ ପାଇଁ ଅନ୍ୱେଷଣର ଶେଷ ନାହିଁ । ରାଧା ଯେପରି କୃଷ୍ଣଙ୍କ ବଂଶୀ ବାଦନ ଶୁଣି କେଶବାସ ଅସମ୍ଭାଳ ହୋଇ କଦମ୍ବମୂଳକୁ ଧାଇଁଯାଉଥିଲେ କୁନ୍ତଳା କୁମାରୀ ସେହିପରି ବେଶଭୂଷାଛାଡ଼ି ମୁହଁପାତି ଉଷ୍ମଲୋତକ ରାଶି ଢାଳି ଦେଉଥିଲେ । ସେଇ ପ୍ରାଣ ସଙ୍ଗାତର ପଦପାତ ଶୁଣିବାପାଇଁ ଚମକି ଉଠି ଏଣେ ତେଣେ ଚାହାଁନ୍ତି । ଆକୁଳ ଅନ୍ତର ଓ ପିପାସା ନେଇ କେତେ ସରିତ ଓ ସାଗର, ବିଜନ ଅରଣ୍ୟ ଓ ଉପତ୍ୟକା, ସ୍ୱପ୍ନରେ ଓ ଜାଗରଣରେ ଖୋଜିବାରେ ଲାଗନ୍ତି । ତାଙ୍କ କାବ୍ୟ ମାନସର ଏହି ସନ୍ଧାନର ସ୍ୱାଭାବିକ ପରିଣତି ହେଉଛି ରହସ୍ୟବାଦ । ଯୁଗେ ଯୁଗେ ଏଇ ରହସ୍ୟବାଦୀ କବି ମାନେ ସେଇ ପରମ ସତ୍ତାଙ୍କ ଅନ୍ୱେଷଣରେ ଯାଇ କେତେକଳ୍ପନାକୁ ଅବୋରିଛନ୍ତି । ଧୂଳି କଣା ଭିତରେ ତା'ର ସମଗ୍ର ସୃଷ୍ଟିର ପ୍ରତିଫଳନ ଦେଖିଛନ୍ତି, ଜଳ ବିନ୍ଦୁ ମଧ୍ୟରେ ସେଇ ପରମର ସୃଷ୍ଟି ରହସ୍ୟର ପ୍ରତିବିମ୍ବନ ଦେଖିଛନ୍ତି । ତଥାପି ସେମାନଙ୍କ ସନ୍ଧାନରେ ଶେଷ ନାହିଁ । ସେହିପରି କୁନ୍ତଳା କୁମାରୀଙ୍କ ଆଦ୍ୟ କାବ୍ୟ ପ୍ରେରଣାର ଏହି ଆଧିଭୌତିକତା ତେଣୁ ତାଙ୍କୁ ଏଇ ଅନନ୍ତ ଅସୀମର କଳ୍ପନାରେ ସ୍ୱାର୍ଗିକ କରିଛି । ଯେମିତିକି -

''ଲତା ପତରରେ, କୁସୁମଫଳରେ ଜଳେ ସ୍ଥଳେ ନଭେ ପବନେ
ଭାସି ବୁଲୁଛି କି ତା' ଅରୂପ ରୂପ ମଜାଇ ତୋ ପ୍ରାଣ ଗୋପନେ ।''

ସେଇ ଅଶବ୍ଦ, ଅରୂପ, ଦୂରତମ, ପୁଣି ନିକଟତମ ରହସ୍ୟ 'ଅଞ୍ଜଳି' ର ବହୁ କବିତାରେ ପ୍ରତିପନ୍ନ । ତେବେ 'ଅଞ୍ଜଳି' କାବ୍ୟସ୍ୱରର ନୈରାଶ୍ୟବୋଧ 'ଉଚ୍ଛ୍ୱାସ'ର କାବ୍ୟସ୍ୱରରେ ଆଶାର ଆଲୋକରେ ଉଜ୍ଜଳି ଉଠିଛି ତେଣୁ ସେ ଆଶାବାଦୀ ହୋଇ ଗାଇଛନ୍ତି -

''ଶେଫାଳୀ ଶେଷଗତି ନୁହେଁ ମୋର ମୃତ୍ୟୁ କେଉଁ କାଳରେ
ମରିବାକୁ ଫୁଟିନାହିଁ ଭବତରୁ ଡାଳରେ
'ଅଛି ରମ୍ୟ ଉପବନ ଯହିଁ ଫୁଟି ଚିରଦିନ
ଅନନ୍ତ ଅମୃତ ପ୍ରେମ ସୁଧାମୟ ସୁବାସେ
ମୋହିବି ମୋ ପ୍ରାଣପ୍ରିୟ ଦେବତାଙ୍କୁ ଉଲ୍ଲାସେ ।''

ତାଙ୍କ ଆତ୍ମୋପଲବ୍ଧି ଓ ଜୀବନ ଦର୍ଶନ ଯେ ତାହାର ଆଶାବାଦୀତାର ଉଜ୍ଜ୍ୱଳ ମୟୂଖରେ ଦୀପ୍ତିମାନ ଏହି ଶେଫାଳୀ ପ୍ରତି କବିତାରୁ ପ୍ରତିପନ୍ନ, କିନ୍ତୁ ଏହି କବିତାଟି ବ୍ୟକ୍ତିଗତ ପ୍ରେମମୂଳକ କବିତା ବୋଲି ବହୁ ସମାଲୋଚକ ମତବ୍ୟକ୍ତ କରିଥାନ୍ତି । ତଥାପି ପ୍ରେମ୍-ଉପାସିକା କୁନ୍ତଳା କୁମାରୀଙ୍କ କାବ୍ୟରେ ସଫଳତାର ଚରମ ବିକାଶ ଘଟିଛି ଏହି ପର୍ଯ୍ୟାୟରେ । କୁନ୍ତଳା କୁମାରୀଙ୍କ ଏହି ବ୍ୟକ୍ତିଗତ ପ୍ରେମ ମୂଳକ କବିତାଗୁଡ଼ିକ ୧୯୨୨ରୁ ୧୯୨୮ ମଧ୍ୟରେ ରଚିତ ହୋଇଥିଲା । କିନ୍ତୁ ସେହି ବ୍ୟକ୍ତି କୈନ୍ଦ୍ରିକ କବିତାଗୁଡ଼ିକ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ଭକ୍ତି ମୂଳକ ବା ଆଧାତ୍ମ୍ ଚିନ୍ତାମୂଳକ ଭାବରେ ଯେ ପ୍ରକାଶିତ ହୋଇଥିଲା; ଏସବୁ କୌଶଳକରି କରିଥିଲେ ଡ଼ାକ୍ତର କୈଳାଶ ଚନ୍ଦ୍ରରାଓ । ୧୯୨୮ରେ କୁନ୍ତଳା କୁମାରୀଙ୍କ ବିବାହ କୃଷ୍ଣ ପ୍ରସାଦ ବ୍ରହ୍ମଚାରୀଙ୍କ ସହିତ ହୋଇଥିଲା ଏବଂ ଶ୍ରୀ ବ୍ରହ୍ମଚାରୀଙ୍କୁ କୁନ୍ତଳା ତାଙ୍କର ପ୍ରେମିକ ପ୍ରବର ଶ୍ରୀକୃଷ୍ଣ ରୂପରେ ଗ୍ରହଣ କରି ପରମ ଭକ୍ତି ଓ ବିଶ୍ୱାସରେ ଗାଇଉଠିଲେ-

''ପଥ ମଝିରେ କୃଷ୍ଣଦେଖା, ଆଉ ନଯିବି ବୃନ୍ଦାବନେ,
(ଏବେ) ମନମୋହନ ଶ୍ୟମଘନ, ରାଜେ ପଦ୍ମାସନେ ।
ପଥଧୂଳି ହେବି ବୋଲି, ମଥାରେ ମୁଁ ନେବିତୋଳି,
ଲୋଟିବି ଶ୍ରୀହରି ବୋଲି, ଧୂଳିଶେଯେ ଅଯତନେ ।
କାନ୍ଦେବହି ନାମଝୁଲି, ପଥେ ପଥେ ବୁଲି ବୁଲି
ହରିନାମ ସୁଧାପାନେ ମତାଇବି ସର୍ବଜନେ ।

ଅନାବିଳପ୍ରଣୟ ଚେତନାର ଦୁର୍ବାର ପ୍ରଣୟ ସ୍ରୋତରେ ଭାସି ଭାସି କୁନ୍ତଳା କୁମାରୀ ୧୯୨୮ ମସିହା ପରେ ପରେ ସୃଷ୍ଟିକରିଥିଲେ ''ପ୍ରେମ ଚିନ୍ତାମଣି'' ପ୍ରେମଗୀତି କବିତା ଗୁଚ୍ଛ । ଏହି ଆବେଗ ସଂଯୋଜିତ କବିତା ସଂକଳନର 'ଚାତକିନୀ', 'ନବନୀରଦ', 'ନୀରପାନ ପ୍ରଭୃତି ୩ଟି ପର୍ଯ୍ୟାୟରେ ଯଥାକ୍ରମେ ପ୍ରଣୟର ଉତ୍କଣ୍ଠା, ପ୍ରତୀକ୍ଷା ଓ ମିଳନର ସ୍ୱର ବହନ କରି ଲୌକିକ ଚେତନାରୁ ଅତି ଲୌକିକ ଭାବନା ଆଡ଼କୁ ଅଗ୍ରସର ହୋଇଅଛି । ନିଜ ସ୍ୱାମୀଙ୍କ ପ୍ରତି ଅତିମାତ୍ରାରେ ଆକୃଷ୍ଟ ହୋଇ ସେ ରଚନା କରିଗଲେ ଗୋଟିଏ ପରେ ଗୋଟିଏ ପ୍ରୀତିଗୀତିକା । ଯେମିତିକି -

''ଆତ୍ମା ଚିହ୍ନିଲା ଆତ୍ମାର ସାଥି / ନଫୁଟିଲା ମୁଖେ କଥା
ସରିତ ଚିହ୍ନିଲା ସାଗର ତରଙ୍ଗ / ପାଦପ ଚିହ୍ନିଲା ଲତା

ଦୀପ ଆଲିଙ୍ଗିଲା ଅନଳଶିଖାଟି / ହେମ ଆଦରିଲା ହୀରା,
ରକ୍ତେ ଛୁଟିଲା ଉଷ୍ଣ ଆନନ୍ଦ / ଚମକାଇ ଶିରା ଶିରା''

କିନ୍ତୁ କୁନ୍ତଳା କୁମାରୀଙ୍କ ପତିକୁ ନେଇ ଏଇ ସ୍ୱପ୍ନ ଦେଖିବା ପରବର୍ତ୍ତୀ ସମୟରେ ସମ୍ଭବ ହେଲାନାହିଁ । ଏ ସ୍ୱପ୍ନ ବାସ୍ତବ ଜୀବନର ସଂଘର୍ଷରେ ଭାଙ୍ଗିଗଲା । ପରବର୍ତ୍ତୀ ସମୟରେ କିନ୍ତୁ ଏଉଚ୍ଛ୍ୱସିତ ନାରୀପ୍ରାଣଟିର ଅବୋଧ ଆକୁଳତାରେ ଜୀବନକୁ ଆଶ୍ରୟ କରି ଗଢ଼ିଉଠିଥିବା ରାଶି ରାଶି କବିତା ଓଡ଼ିଆ ସାହିତ୍ୟ ଜଗତରେ ଅମରତ୍ୱ ଲାଭ କରିପାରିଛି । ତାଙ୍କ ବ୍ୟକ୍ତିଗତ ଜୀବନର ଲାଭକ୍ଷତିର ହିସାବ ନିକାଶ ଯାହା ହେଉନା କାହିଁକି କୁନ୍ତଳା କୁମାରୀ ବିବାହପରେ ଏତେ ଏତେ ପାରିବାରିକ ଜଞ୍ଜାଳ, ମାନସିକ ବ୍ୟସ୍ତତା, କୁତ୍ସିତ ପରିସ୍ଥିତି ଓ ଜୀବନ ଯନ୍ତ୍ରଣା ଭିତିରୁ ନିଷ୍କୃତି ପାଇଁ ଅହରହ ବ୍ୟାକୁଳତା ମଧ୍ୟରେ ରହି ଗଭୀର ବିଭୂଚେତନା ଭିତରେ ନିଜକୁ ଓ ନିଜ ପରିସ୍ଥିତିକୁ ଭୁଲିବାକୁ ଚେଷ୍ଟା କରିଛନ୍ତି । 'ପ୍ରେମ ଚିନ୍ତାମଣି' ତେଣୁ ତାଙ୍କ କାବ୍ୟ ମାନସର ଏକ ସମନ୍ୱୟ ମୂଳକ ଅବଶ୍ୟମ୍ଭାବି ପରିଣତି ବୋଲି ସ୍ୱୀକାର କରାଯାଏ । ଓଡ଼ିଆ ସାହିତ୍ୟରେ ରାଧାନାଥୋତ୍ତର ଯୁଗର ଏହିକବି ରାଧାକୃଷ୍ଣ, ଲଳିତା, ବିଶାଖା ଆଦି ଚରିତ୍ରକୁ ନେଇ ଏକ ରାସନାଟିକା ଲେଖିବାର ପରିକଳ୍ପନା ଆଦୌ କରିନଥିଲେ । ଏହା ତାଙ୍କ 'ପ୍ରେମଚିନ୍ତାମଣି' ପାଣ୍ଡୁଲିପିର ନିଜ କଥାରୁ ସହଜରେ ଜାଣିହୁଏ - ''ବହିର ନାୟକ ନାୟିକାଙ୍କୁ ରାଧାକୃଷ୍ଣ ଭାବରେ ଗ୍ରହଣ କରିବାପାଇଁ ମୋର ଆଦୌ ଇଚ୍ଛା ନଥିଲେ ହେଁ, ପୁଣି ମହାଭାବପୂର୍ଣ୍ଣ ରାଧାକୃଷ୍ଣ ଲୀଳା ଓ ତତ୍ ସମ୍ବନ୍ଧୀ ପୁସ୍ତମାନଙ୍କବର୍ଣ୍ଣିତ ବିଷୟରେ ମୁଁ ଅନଭିଜ୍ଞ ଥିଲେହେଁ ଚକ୍ରଧରଙ୍କ ସନିର୍ବନ୍ଧ ଅନୁରୋଧ ଉପେକ୍ଷା କରି ନପାରି ବହିରନାମ 'ପ୍ରେମ ଚିନ୍ତାମଣି' ଓ ନାଟକର ନାୟକ ନାୟିକାଙ୍କୁ ଜଗଦ୍‌ବରେଣ୍ୟ ଶ୍ରୀମତୀ-ଶ୍ରୀକୃଷ୍ଣ ନାମରେ ନାମିତ ରଖିଛି'' । 'ପ୍ରେମ ଚିନ୍ତାମଣି' କୁ କୁନ୍ତଳା କୁମାରୀଙ୍କ ଜୀବନ ଚରିତ୍ର ଲେଖକ ଶ୍ରୀ ଚକ୍ରଧର ମହାପାତ୍ର ଏପରି ସନ୍ନିକରଣ କରିଛନ୍ତି ଯେ କୁନ୍ତଳା କୁମାରୀଙ୍କ ମୂଳ କାବ୍ୟ ଚେତନା ଏକ ବାଧ ବାଧକତାରେ ଧର୍ମଦର୍ଶନ ଆଡ଼କୁ ମୁହାଁଇ ଯାଇଛି ଏବଂ ଏହାର ଗୀତିଚେତନା ଓ ରସୋପଲବ୍‌ଧିରେ ଘୋର ଅନ୍ତରାୟ ସୃଷ୍ଟି ହୋଇଛି । ଫଳରେ ମନେହୁଏ ସତେ ଯେପରି ଏକ ମହାନ ସତ୍ୟ ଗୋପନୀୟ ହୋଇ ରହିଯାଇଛି । କୁନ୍ତଳା କୁମାରୀ ନିଜେ କୌଣସି ନିର୍ଦ୍ଦିଷ୍ଟ ଧର୍ମଦର୍ଶନ ପ୍ରତି ଆକୃଷ୍ଟ ଥିବା ତାଙ୍କ ରଚନାରୁ ବା ଜୀବନରୁ ପ୍ରତିପନ୍ନ ହୁଏ ନାହିଁ । ସେ ପ୍ରଥମେ ଖ୍ରୀଷ୍ଟିଆନ୍, ପରେ ବ୍ରାହ୍ମ, ପୁଣି ବିବାହପରେ ହିନ୍ଦୁଧର୍ମରେ ଦୀକ୍ଷିତ ହୋଇଥିଲେ । ଏବଂ ତାଙ୍କ କାବ୍ୟ କବିତାରେ କୌଣସି ନିର୍ଦ୍ଦିଷ୍ଟ ଧର୍ମପ୍ରତି ଆସକ୍ତି ପ୍ରକାଶ ପାଇନାହିଁ, ବରଂ ବିଶ୍ୱପ୍ରାଣତା ଓ ମାନବିକ ଦରଦର ରାଗିଣୀରେ ତାଙ୍କ ମୁଖ୍ୟ କାବ୍ୟଚିନ୍ତା ରମଣୀୟ । ''ସେ ଯେଉଁଠି ନାୟିକା ଭାବରେ ତାଙ୍କର କବି ପ୍ରେମିକକୁ ପ୍ରଣୟ-ରାଜ୍ୟର ଭାବେତିହାସ ନିବେଦନ କରିଛନ୍ତି, ଏବଂ ମାନସ-ନାୟକର ପ୍ରଣୟଭାବକୁ ନିଜର ଭାଷା-ତୁଳିକାରେ ବିଚିତ୍ର ବର୍ଣ୍ଣ ବିନ୍ୟାସ ଦେଇଛନ୍ତି । ସେହି କଥା ସେ ଅତ୍ୟନ୍ତ ଅସାଧାରଣ ସାହସିକତା ସହକାରେ ବ୍ୟକ୍ତ କରିଛନ୍ତି ବୋଲି ସୁଧୀ ନରନାରୀ ତାଙ୍କୁ ଚିରଦିନ ସମ୍ମାନ କରିବେ ।

ଯଦିଓ ଏହି କାବ୍ୟର ମୁଖବନ୍ଧରେ ବୈଷ୍ଣବ-କାବ୍ୟ-ସାହିତ୍ୟ ରସିକ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି କୁନ୍ତଳା କୁମାରୀଙ୍କୁ ବାଧତଃ ଚିରାଚରିତ ବୈଷ୍ଣବ କାବ୍ୟଦଳନ ଓ ଭାବନା ନେଇ ବିଚାର କରିଛନ୍ତି

ତଥାପି ପ୍ରେମ ଚିନ୍ତାମଣିକୁ ତା'ର ତଥା କଥିତ ରସନାଟ୍ୟ ରୂପରୁ ଉଦ୍ଧାର କରି 'ଗ୍ରନ୍ଥମୋଳା'ର ସଂକଳକ ଡକ୍ଟର କୁଞ୍ଜବିହାରୀ ଦାଶ ଓଡ଼ିଆ ସାହିତ୍ୟ ଓ ନାରୀ କବିଙ୍କ ପ୍ରତି ସମୁଚିତ କର୍ତ୍ତବ୍ୟ କରିଛନ୍ତି ।

କୁନ୍ତଳା ଜୀବନରେ ବ୍ୟର୍ଥ ପ୍ରେମିକାଟିଏ ହୋଇଥିଲେ ହେଁ ପ୍ରତିଟି କବିତାର ଛତ୍ରେ ଛତ୍ରେ ପ୍ରେମର ଜୟ ଜୟକାର କରିବାକୁ ଆଦୌ କୁଣ୍ଠିତ ହୋଇନାହାଁନ୍ତି । ତେଣୁ ସେ ନିଃସଂକୋଚରେ ଗାଇଛନ୍ତି -

ଆଜି ପ୍ରେମ ରାଇଜର ରାଜାପାଶେ
ପ୍ରେମ ରାଇଜର ରାଣୀ
ନିଖିଳ ବିଶ୍ୱ ଉଚ୍ଚାର ଆଜି
ମିଳନ ମଙ୍ଗଳ ବାଣୀ ।
ବରଷ କଲ୍ୟାଣ ରାଶି
ଯାଅହେ ଆଶିଷ ଭାଷି
ପିଅ ପ୍ରେମାମୃତ, ପ୍ରାଣ ହର୍ଷେଗାଅ
ପ୍ରେମଜୟ ସର୍ବପ୍ରାଣୀ ।
ପ୍ରେମର ଜୟ ମରଣର ଜୟ
ଉଠୁ ପ୍ରେମଗୀତି ବିଶ୍ୱମୟ ।

ବାସ୍ତବିକ କୁନ୍ତଳା କୁମାରୀଙ୍କ ରୋମାଣ୍ଟିକ ପ୍ରେମଚେତନାରେ ଦେହ ଯେତିକି ସତ୍ୟ, ବିଦେହ ସେତିକି ସତ୍ୟ । ଆତ୍ମାର ପ୍ରେମରେ ସେ ବିଶ୍ୱାସ ରଖନ୍ତି । ଇହଲୋକରେ ବିଫଳ ହୋଇଥିବା ମିଳନ ପିପାସା ପରଲୋକରେ ନିଶ୍ଚୟ ସୁଲଭ ହେବ ଏ ବିଶ୍ୱାସ ତାଙ୍କ ମନରେ ରହିଯାଏ । ତେଣୁ ବିଷର୍ଣ୍ଣ ବେଦନା ଓ ଅଶ୍ରୁ ସର୍ବତ୍ର ତାଙ୍କର ପ୍ରେମ ପୂଜାର ଉପାଦାନ ହୋଇଥିଲେ ହେଁ ସେ ଆଶାରେ ବଞ୍ଚିରହନ୍ତି ।

ତେବେ ଏଇ ଆଶାବାଦୀ କବି ଜଣକ ଏମିତି ଅସରନ୍ତି ଆଶା ସ୍ୱପ୍ନକୁ ପାଥେୟକରି ରାଶିରାଶି କବିତା, ଅଜସ୍ର ସାରସ୍ୱତ କୃତି ସୃଷ୍ଟିକରି ଉତ୍କଳୀୟ ବାଣୀ ରାଣୀଙ୍କୁ ବିମଣ୍ଡିତା କରୁକରୁ ୧୯୩୮ ମସିହା ଅଗଷ୍ଟ ୨୩ ତାରିଖରେ ଅପରିଣତ ବୟସରେ ମୃତ୍ୟୁର କୋଳରେ ନିରବି ଯାଇଥିଲେ । ସେହିଠାରେହିଁ ତାଙ୍କ ଦୀର୍ଘ ୧୮ ବର୍ଷର କର୍ମମୟ ଜୀବନର ଅବସାନ ଘଟିଥିଲା । କୁନ୍ତଳା କୁମାରୀଙ୍କ ଏହି ଅକାଳ ମୃତ୍ୟୁରେ ଓଡ଼ିଆ ସାହିତ୍ୟର ଓ ସାମାଜିକ, ଜାତୀୟ ଜୀବନର ଅପୂରଣୀୟ କ୍ଷତି ଘଟିଥିବା ଲକ୍ଷ୍ୟକରି କବି ସଚ୍ଚିଦାନନ୍ଦ ଗାଇଉଠିଥିଲେ -

''ନୁହେଁ ସେତ ଖାଲି ନାରୀ, ଖାଲିମାତା ଅବା ଖାଲିକବି
ଜାତୀୟ ସମରେ ସେ ଯେ ସଇନିକ ତୋଳିଛି ଭୈରବୀ ।
ଆଗେ ସେ ଧରିଛି ଅସି ପଛେ ସିନା ଧରିଛି ଲେଖନୀ
ତେଣୁ ତା'ର ପ୍ରତିଗାନେ ଥରିଉଠେ ଦେଶର ଧମନୀ' ।

ସେହିପରି ଗୋପାଳଚନ୍ଦ୍ର ପ୍ରହରାଜ କହିଥିଲେ - ''ଗାଇବା ଯେପରି ପକ୍ଷୀମାନଙ୍କର ନୈସର୍ଗିକ ପ୍ରକୃତି, କବିତା ସେହିପରି କୁନ୍ତଳାଙ୍କ ପକ୍ଷରେ ପ୍ରାକୃତିକ ଥିଲା । ଓଡ଼ିଆ ଭାଷାରେ ସେ ଯେଉଁ ଜୀବନୀ ଶକ୍ତି ସଂଚାର କରିଯାଇଛି ଓଡ଼ିଆ ଜାତି ଆଜି ତାହା ହୃଦୟଙ୍ଗମ କରିନାହିଁ, ଦିନେ କରିବ'' ତେବେ ହୁଏତ ଆଜି ତାଙ୍କୁ ବିଚାର କରିବାର ବେଳେ ଆସିଯାଇଛି ।

ତେବେ ସେହି ସମୟରେ ହିଁ ପୁରୀର ମୁକ୍ତିମଣ୍ଡପ ଦ୍ୱାରା କୁନ୍ତଳାକୁମାରୀ ନିଜର ସାରସ୍ୱତ କୃତି ପାଇଁ ପ୍ରଶଂସିତ ହେବା ସହ ମହିଳା ବନ୍ଧୁ ସମିତି ଦ୍ୱାରା ''ଉତ୍କଳ ଭାରତୀ'' ଉପାଧି ପ୍ରାପ୍ତ ହୋଇଥିଲେ ।

ସେ ନିଜେ ଜୀବନର ଅଧିକାଂଶ ସମୟ ଦୁଃଖ ଯନ୍ତଣାରେ ଜର୍ଜରିତ ହୋଇ ଏବଂ ବିଭିନ୍ନ ସମୟରେ ଅନ୍ୟମାନଙ୍କଦ୍ୱାରା ନିର୍ଯ୍ୟାତୀତ ଅପମାନିତ ହୋଇ କହୁଥିଲେ - ''ମୁଁ କାହାସହିତ ଲଢ଼ି ମହାନ ହେବାର ଚିନ୍ତାଘେନି ଜନ୍ମିନାହିଁ । ମୋର କୌଣସି ସୁଗନ୍ଧଥିଲେ ମୁଁ ମହମହ ହୋଇ ବାସିଉଠିବି । ଯେବେ କିଛି ନଥିବ ତେବେ ଅନ୍ଧକାରରେ ଲୀନ ହୋଇଯିବି'' । କୁନ୍ତଳା କୁମାରୀଙ୍କ କୃତିର ମୂଲ୍ୟାୟନ ପାଇଁ ଭାଗିରଥି ମହାପାତ୍ରଙ୍କ ସାରସ୍ୱତ ମତ ଉଲ୍ଲେଖ ଯୋଗ୍ୟ - ''କୁନ୍ତଳା କୁମାରୀ ତାଙ୍କର ଅସ୍ମିମନ୍ତା, ହୃଦୟ କଲେ, ଏବଂ ଆତ୍ମାର ନିବୃତ୍ତଦେଶରୁ ଯେଉଁ ସାହିତ୍ୟ ସୃଷ୍ଟି କରିଥିଲେ ତାହା ଓଡ଼ିଶାର ସାମାଜିକ ରାଜନୈତିକ ଏବଂ ସାସ୍କୃତିକ ଉନ୍ନତିରେ ସର୍ବୋତ୍ତମ ସହାୟ ହୋଇପାରିଛି ।

ବାସ୍ତବିକ କୁନ୍ତଳା କୁମାରୀ ଉତ୍କଳୀୟ ବାଣୀ ଭଣ୍ଡାରର ଅମୂଲ୍ୟ ମଣି ଥିଲେ ଏବଂ ନୂତନ ଯୁଗର ଏକ ଏକାଗ୍ର ସାଧିକା ରୂପେ ଓଡ଼ିଆ ସାହିତ୍ୟ ଜଗତକୁ ଯେଉଁ ଅବଦାନ ଦେଇଯାଇଛନ୍ତି ସେଥିପାଇଁ ସେ ଓଡ଼ିଆ ପ୍ରାଣରେ ତଥା ବାଣୀ ବିତାନରେ ଚିର ଅମ୍ଳାନ, ଚିର ଅମର ହୋଇ ରହିବେ, ଏଥିରେ ସନ୍ଦେହର ଅବକାଶ ନାହିଁ ।

*ସଂପାଦିକା ''କସ୍ତୁରୀ''*

*ଜଗିଚାଖଣ୍ଡି, ବ୍ରହ୍ମପୁର - ୭୬୦୦୦୬*



କବି କୁନ୍ତଳାକୁମାରୀଙ୍କ ଉଦ୍ଦେଶ୍ୟରେ ନିବେଦିତ

**କବିତାଞ୍ଜଳି**

# ତମକୁ ଡ଼ାକୁଛୁ, ମାଆବୋଲି

ବନଜ ଦେବୀ

ତମକୁ  ଡ଼ାକୁଛୁ ଆଜି ମାଆ ବୋଲି
ତମ ଭିନ୍ନ କିଏ ହୋଇ ପାରେ ଆମ ମାଆ ?
ପ୍ରସ୍ତ ପ୍ରସ୍ତ ଅନ୍ଧାରର ପଥର ଫଟେଇ
ମୁକୁଳି ଆସିଲ ତମେ ଆଲୋକର ପକ୍ଷୀ
        ଗଢ଼ିବାକୁ ନିଜ ବୁନିଆଦି
        ଖୋଲି ବାକୁ ନିଜ ନିଜ ରାହା ।
ତୁମର ସେ ଉଡ଼ାଣ ପ୍ରୟାସେ,
ଭୋର ହେଲା, ସିନ୍ଦୂରା ଫାଟିଲା
ଝିଡ଼ିକି ଖୋଲିଲା ଯେତେ ଗମ୍ଭୀରି ଘରର
ଜମାଥିବା କଇଁଥିଆ ଦୁଃଖ, କଦର୍ଥନା
ପ୍ରାଣ ପାଇ କୁହୁଳିଲେ, ଛଟପଟ ହେଲେ
ଦି' ହାତ ବଢ଼ାଇ ସବୁ ତୋଳି ନେଲ, ହୃଦ-ପଣତରେ,
        କହିଲ ନିୟତ,
''ଆମେ ତ ଏତିକି ନୁହେଁ, ଆମେ ବି ଏମିତି ନୁହେଁ,
        ଅଛି, ଅଛି ଆମ ପାଇଁ ସୁନିଶ୍ଚିତ ଭବ୍ୟ ଭବିଷ୍ୟତ ।''
        କଣ୍ଟା ସଫାକରି ସବୁ ବାଟ ଫିଟାଇଲ,
        ଯେ ପଥରେ ଥିଲେ ନାହିଁ, ଜଣେ ହେଲେ ନାରୀ,
        ସେ ପଥେ ଅଗ୍ରଣୀ ହେଲ, ବୀର ତୁମେ,
        ହାତେ ଧରି ଶବ୍ଦ କରବାଳ,
        ମାଟି ଜର୍ଜରିତ ତୁମରି ଅସ୍ତିତ୍ୱ,
        ବନ୍ଧ ଭାଙ୍ଗି ଦେଉଥିବା, ପ୍ରେମର ଉଦ୍ଦାମ-ଅଥୟ ସ୍ରୋତ

'ବହିଗଲା ଶତଧାର ହୋଇ

କେତେବେଳେ ''ଉଲ୍ଲାସ''ରେ

କେତେବେଳେ ''ଆହ୍ୱାନ'' ରେ

କେତେବେଳେ ଭକ୍ତିର 'ଅଞ୍ଜଳି' ହୋଇ

କେତେବେଳେ ତେଜୀୟାନ୍ ଶବ୍ଦ ସ୍ଫୁଲିଙ୍ଗରେ

ନିଜକୁ ବିଞ୍ଚିଲ ତମେ, ଏହିପରି,

ଅକ୍ଷରେ, ଅକ୍ଷରେ, ପ୍ରେମ ମଧୁ

ଦେଶ ପାଇଁ, ଜାତି ପାଇ.

ମଣିଷମାନଙ୍କ ପାଇଁ, ମାଟିର ଶେଫାଳି, ତାର

ସର୍ବୋପରି ଈଶ୍ୱରଙ୍କ ପାଇଁ

ଏ ବିଞ୍ଚିବା ଏତେ ହେଲ, ଉଛୁଳ ବିଭୋର,

ଜୀବନ ଅଣ୍ଟିଲା ନାହିଁ, ମା ! ଜୀବନ ଅଣ୍ଟିଲା ନାହିଁ ।

ତୁମକୁ ଡ଼ାକୁଛୁ ଆଜି ମାଆ ବୋଲି ଏକ କଂଠେ

ସମ୍ମିଳିତ ସ୍ୱରେ,

ତମେ ଫେରି ଯିବାର, ବା'ଷଠି ବରଷ ପରେ,

ଯାହାଥିଲା, କିଛି ହେଲେ ଯାଇନି ବଦଳି

ଆମେ କିନ୍ତୁ ହେଲୁ ନାହିଁ, ଠିକ୍ ତୁମପରି

ଭେକ ବଦଳାଇ, ମାତ୍ର କେତେ ପାଦ ଯାଇଛୁ ଆଗେଇ

ଆମ କର୍ମେ, ଆମ ପ୍ରାଣେ,

ତୁମପରି ଏତେ ପ୍ରେମକାହିଁ ?

ଯେଉଁଠୁ ଫେରିଲ ତମେ, ସେଇଠୁ ଆରମ୍ଭ ଆମ ଗତିପଥ

ତମ- ଶବ୍ଦ- ହୁତାଶନ, ଆମ ପ୍ରାଣ କରେ ଉଦ୍ଦୀପିତ

ହେ ପ୍ରେମର ମହାଦେବୀ, ଦେଖ, ଦେଖ,

ଚାଲିଛନ୍ତି ଅଭିଯାତ୍ରୀ ଦଳ,

ଧ୍ୱଜା ଧରି ଉତ୍ତରାଧିକାର,

ଆଶୀର୍ବାଦ କର,

ହୃଦୟରେ ଉଦ୍‌ଜୀବିତ ରହୁ, ପ୍ରେମ ଚେତାବନୀ

ହାତେ ହାତେ ଶକ୍ତ ହେଉ, ତୀକ୍ଷ୍ଣ ଶବ୍ଦ ହତିଆର ।



# ଅପୂର୍ବ ଫୁଲଦାନୀରେ

(କବିଂ କୁନ୍ତଳାକୁମାରୀ ସାବତଙ୍କୁ ନିବେଦିତ)

*ପ୍ରତିଭା ଶତପଥୀ*

ରକ୍ତ ଜୁଡୁବୁଡୁ ଯଂନ୍ତଣାର ଆର୍ତ୍ତନାଦ ଭିତରେ
କଅଁଳାଛୁଆର କାଂଦଣା
ଶୁଭି ନ ଥିବ, ଚେତନା
ନିସ୍ତେଜ ହୋଇ ଆସୁଥିବ
ଧୀରେ ଧୀରେ,
ଆଖିରେ ଅଂଧାର
ନାଚୁଥିବ,
ଛାତି ଫାଟିଯାଉଥିବ ଶୋଷରେ
ଦିନଟାରେ
ଜୁଲୁଜୁଳିଆ ପୋକ ଘରସାରା
ମେଳା ମେଳା
ସତେ କ'ଣ ସେତିକିବେଳେକୁ
ଝଡ଼ିପଡୁଥିବା ଫୁଲକୁ
ଆଂତରିକତାର ଉଷ୍ମ ଦୁଇ ପାପୁଲିରେ ସିଏ
ଆଦରି ନେବ, ଯତ୍ନରେ ?
'ଆମ୍ଭର ଚାରୁଫୁଲ'ଟି;
ଯା'ରରୂପ, ରସ, ଗଂଧ ଅତି ଚିହ୍ନା ଚିହ୍ନା
ଯାହାକୁ
ଚରଣରେ ଦଳିଦେବା କଦାପି ସଂଭବ ନୁହେଁ
ଯାହାକୁ
'ଅପୂର୍ବ ନିକେତନର' ଫୁଲଦାନୀରେ ସିଏ
ସଜେଇ ରଖିବ ବୋଲି
ତୁମର କାମନା
ଚରିତାର୍ଥ ହେଲା, ସତକୁହ ?
ଶରତ୍ ସକାଳର ଟୋପା ଟୋପା
କାକର ମିଶା ଗଂଗଶିଉଳି
ଗଢ଼ିଥିଏ
ତୁମ ଲୁହ ଛଳ ଛଳ ମୁହଁ,
ସବୁଦେଇ ଯିବାର ବ୍ରତପାଳି
ମହୀୟସୀ ନାରୀ;
କେତେବେଳେ ଫୁଲକୁ ତ
ଆକାଶକୁ ଦୁଃଖ କହି,
ତା'ର ପ୍ରେମକୁ ଖୋଜି ଖୋଜି ନପାଇ,
ପ୍ରାଣପ୍ରିୟ ଦେବତାଂକ ଆଲିଂଗନ -
ଅଭିଳାଷ ପାଇଁ
ତଥାପି ବଂଚିରହି,
ସଂତୋଷର ସାଧନାପୀଠରେ
ମଲା ଚଢ଼େଇର ପରକୁ ସାଉଁଟି,
ଆକସ୍ମିକ ଶେଷଦୃଶ୍ୟର କାତର ନାୟିକାଟି,
ସାହସିନୀ କବି
ସତେ କ'ଣ ପ୍ରିୟ ମିଳନର
ସେଇ ମୁହୂର୍ତ୍ତରେ ଉଲ୍ଲସିତ ହେଲ ?
ଅପ୍ରାପ୍ତିର ଅବଶୋଷ ତୁମର
ଅଦ୍ଭୁତ ଯାଦୁକରଟେ
ମଣିଷକୁ ଦେବତା କରିଲା
ମଣିଷର ଅବିଚାର
ଦୂର ଦେବତାର
ଅନିନ୍ଦ୍ୟ ରୂପକୁ ନିକଟରେ ଦେଲା
ତଥାପି ଆଶାବାଦିନୀ;
ଅଣହେଳାରେ ଛୁଆଟି ତୁମର
ଏ ମାଟିରୁ ହଜିଗଲାପରେ,
ସ୍ଫୁଲିଙ୍ଗମାନେ ଆକାଶରେ ନିଭିଗଲାପରେ
ଅପୂର୍ବ ନିକେତନର ସେ ଫୁଲଦାନୀରେ
ସଜାହୋଇଥିବା ସୁଂଦର ଚିତ୍ରିତ
ଫୁଲଟି କ'ଣ
ହସିଲାଗିଚି, ସବୁଦିନ ?

('ସାହାଡା ସୁନ୍ଦରୀ' ସଂକଳନରୁ ସଂଗୃହୀତ)

❖

# ଆଗୋ କୁନ୍ତଳା କୁହ ସତରେ

ଜୟନ୍ତୀ ରଥ

କରିଥିଲ ଘର ଆଶାରେ
ରଙ୍ଗ ଦେଇଥିଲ ତୁମେ ଲୁହରେ
ପ୍ରାଣ ଦେଇଥିଲ ପ୍ରେମରେ
ମଙ୍ଗ ମୋଡ଼ିଥିଲ ମଣିଷର ଯିଏ ପଥ ହୁଡ଼ିଥିଲା ଅନ୍ଧାରେ
ଆଗୋ କୁନ୍ତଳା କୁହ ସତରେ
ଥକାକେ ଗଲ କି ଶୋଇ ପଡ଼ିବାକୁ ଅଦୃଶ୍ୟ ବେଳାଭୂମିରେ
ଚିର ସବୁଜ ଶବ୍ଦ ଶେଯରେ ।

ଶେଫାଳିରେ ଭରି ଅଂଜଳି କିଏ ପ୍ରୀତି ଅରଚନା କରିବ
ଆନ ସନ୍ତାପ ଫେଡ଼ିବା ସକାଶେ ଛନ୍ଦ କିଏ ସେ ଯୋଡ଼ିବ
ଜାତିର ଛାତିରେ ତାତି ଭରିବାକୁ ନିଶା ନିଶା କିଏ ଜାଗିବ
"ଗୋକୁଳ ନାଏକ" "କାଳୀବୋହୂ" ବ୍ୟଥା ତମ ଛଡ଼ା କିଏ
ବୁଝିବ ।

ଆଗୋ କୁନ୍ତଳା କୁହ ସତରେ
ଭେଦର ମନ୍ତ୍ର ଜାଣିବା ଆଗୁଁ କି
ଲୁଚି ଗଲ ଶବ୍ଦ ବ୍ୟୂହରେ ।

ଫୁଲ ଫଗୁଣର ଗନ୍ଧରେ ଦିଗ ଭରିଲ
ଅଗ୍ନି ବୀଣାରେ ରାଗ ଭୈରବୀ ତୋଳିଲ
ଧୂସର ଧରାରେ ବିଞ୍ଚିଯିବାକୁ ଅବିର
ବରଷାଇ ଦେଲ ନୟନର ଯେତେ ଅଶ୍ରୁନୀର

ଅଗୋ କୁନ୍ତଳା କୁହ ସତରେ
ଶତ ଅନ୍ତର ଜ୍ୱାଳା ଯନ୍ତ୍ରଣା କମାଇ ଦେବାକୁ ଅଚିରେ
ତପବର ଆସନେ ଶୋଇଯାଇଚ କି

ଦିଗ୍‌ବଳୟର ସେପାରେ ।

ଆଗୋ କୁନ୍ତଳା କୁହ ସତରେ ।

ପ୍ଲଟ ନଂ ୧୧୫
ବାପୁଜୀ ନଗର, ଭୁବନେଶ୍ୱର ୭୫୧୦୦୯



# କୁନ୍ତଳା କୁମାରୀ

ସରୋଜିନୀ ଷଡ଼ଙ୍ଗୀ

କୁନ୍ତଳ ଖୋଲି, କୁନ୍ତଳା ତୁମେ
କିନ୍ନରୀ ହେଲନାହିଁ
କର କମଳରେ କଂକଣ ଦେଇ
କୋମଳ ଲଲାଟେ କୁଂକୁମ ଦେଇ
କୁନ୍ତଳା ତୁମେ କଲ୍ୟାଣୀ ହେଲନାହିଁ ।
ବ୍ରହ୍ମଦେଶର ବିମଳ ବିଭାରେ
ରେଂଗୁନର ସେ ରଂଗୀନରାତି
ରକ୍ତ କରବୀ ରଜନୀ ଗଂଧା
ଗଂଧରେ ତୁମ
ଆକୁଳ ହେଲନି ଜମା
ଓଡ଼ିଶା ଭୂଇଁର ମାଟିକୁ ହେଜିଲ
ଓଡ଼ିଶାର ପାଣି ପବନ ଖୋଜିଲ
କୃଷ୍ଣା କାବେରୀ କୃଷ୍ଣ କେଶର
ମାୟାରେ ଭୁଲିଲ ନାହିଁ
ସତଲେଜ ଆଉ ସିନ୍ଧୁ ଝେଲମ
ଚେନାବ ନଦୀର ଚୂର୍ଣ୍ଣ ଚୂଳରେ
ମୁହଁ ପଖାଳିଲ ନାହିଁ ।
ସୁବର୍ଣ୍ଣରେଖା ପାଣିରେ ଦେଖିଲ
ପୁନେଇଁ ରାତିର ଜହ୍ନ !!
ବିରୂପାକୁ କଲ ସୌମ୍ୟା ସୁରୂପା
ମହାନଦୀ ତୁମ ଲେଖନୀ ମୂନରେ
ହୋଇଗଲା ଦିନେ ମୃଣ୍ମୟୀ ମନୋରମା !
ଚିକିତ୍ସିକାର ଚାରୁ କଳାନେଇ
ନିପୁଣ ହାତରେ ରୋଗୀ ସେବା କରିଗଲ !
କବିତାର ଯେତେ ସୂକ୍ଷ୍ମ ଭାବନା
ମୁମୂର୍ଷୁର ସେ ଦୈନ୍ୟ ଯାତନା
ସବୁ ଫୁଟାଇଲ ସ୍ୱର୍ଣ୍ଣ ଆଭାରେ
ସୁରୁଚି ଶୋଭାରେ, ଶେଫାଳୀ ହାରରେ
ସଜାଇଲ ତୁମେ ଉତ୍କଳ ମାଆଗଳା ।
ଏକଇ ହାତରେ
ରୋଗନିଦାନର ଯନ୍ତ୍ର ଧରିଲ !
ଅନ୍ୟ ହାତରେ ଲେଖନୀ ମୂନରେ
କାଦମ୍ବିନୀର କକ୍ଷ ଛୁଇଁଲ !
ଓଡ଼ିଶା ମାଟିର ସବୁଜ କ୍ଷେତରେ
ଗାଆଁ ଧାନବିଲ ଆମ୍ବ ବଉଳେ
ଲେଖି ଦେଇଗଲ ଲଳିତ କାବ୍ୟ କଳା
ଶେଫାଳୀ ଫୁଲର ଗଭୀର ଆଖିରେ
ତୁମେ ପାଇଥିଲ
ନଶ୍ୱର ଏକ ମାନବ ଦେହର
ଶେଷତମ ପରିଚୟ ।
ଗଂଗଶିଉଳି ଶୁଭ୍ରଶିଳାରୁ
କୁନ୍ତଳା ତୁମେ ଶୁଣି ପାରିଥିଲ
ଆତ୍ମା ଫୁଲର ସ୍ୱର ।
ଉତ୍କଳ ମାଆ ଗଳାରେ ତୁମେଯେ
ଚିରଦିନ ପାଇଁ ଜଳୁଥିବ ଏକ
ହୀରାର ପଦକ ହୋଇ
କୁନ୍ତଳା ତୁମେ ଚିରଦିନ ପାଇଁ
ଶୋଭା ପାଉଥିବ
କୋମଳ କୁସୁମ ହୋଇ ।
ଏକ ଆବେଗ ! ଏକ ଉଦ୍‌ବେଗ !!
ବିଭୁ ପଦତଳେ ବିଲୀନ ହେବାର
ମୁଗ୍ଧ ମଧୁର ଭାବ !
ଏକି ସଂଯୋଗ ! ଏକିବା ବିଯୋଗ
ଦେହରୁ ବାହାରି ବିଦେହ ସଂଗେ
ନିଯୋଗ ହେବାର ଯୋଗ ?
କର କମଳରେ କଂକଣ ଦେଇ
କୁନ୍ତଳା ତୁମେ, କଲ୍ୟାଣୀ ହେଲନାହିଁ !
କୁନ୍ତଳ ଖୋଲି
କୁନ୍ତଳା ତୁମେ !
ସତରେ ତ' ଜମା
କିନ୍ନରୀ ହେଲ ନାହିଁ !!!

ସହକାରୀ ଅଧ୍ୟାପିକା, ସ୍ତ୍ରୀରୋଗ ଓ ପ୍ରସୂତିବିଭାଗ
ଶ୍ରୀ ରାମଚନ୍ଦ୍ର ଭଂଜ ମେଡ଼ିକାଲ୍ କଲେଜ, କଟକ



# ଯଶସ୍ୱିନୀ

*ଗିରିଜା ମଞ୍ଜରୀ ପାଢ଼ୀ*

ନିତ୍ୟ ନୂତନ ଆକାଶେ ସୂର୍ଯ୍ୟଜାଗେ
କୋଣାର୍କର ଶିରେ ତାର ପହିଲି କିରଣ
ଚୁମି ଚୁମି ଯାଏ
ମୂକସାକ୍ଷୀ କୋଣାର୍କ ଓଡ଼ିଆ ଜାତିର ।।
ଉତ୍କଳର ଥିଲା ଦିନେ ନିଜସ୍ୱ ସଂସ୍କୃତି
ଭାଷା, ଉପଭାଷା
ଆଜି ତାର ଅବକ୍ଷୟ, ଗଳିତ ବରଫ ପରି
ଝରିଯାଏ ତରଳି ତରଳି ।।
ମୃତ ପ୍ରାୟ ହୋଇ ଆସେ ଉତ୍କଳୀୟ ଭାଷା
ପ୍ରବାସୀ ଓଡ଼ିଆ ଆଜି ଭଲ ପାଏ ଭୁଲିବାକୁ ନିଜ ମାତୃଭାଷା ।।
ଓଡ଼ିଆର ଓଡ଼ିଆତ୍ୱ ସ୍ୱାଭିମାନ
ଦିନୁ ଦିନ ହୋଇ ଆସେ କ୍ଷୀଣ ।।
ହେ ଯଶସ୍ୱିନୀ କୁନ୍ତଳା କୁମାରୀ
ଆଉ ଥରେ ଧରାବତରଣ ହୁଅ
ତୁମରି ଆବେଗମୟ ଭାଷା ସାହିତ୍ୟରେ
ନିରୋଳା ଓଡ଼ିଆରେ ପୁଣି ଥରେ ଲେଖିଯାଅ
ନଟୁଣୀ' କାଳୀବୋହୂ, ଆଉ ଯେତେ କଥା ଓ କାହାଣୀ
ଅନ୍ତଃପୁର ଲଳନାର ଜ୍ଞାନ ଚକ୍ଷୁ ଉନ୍ମିଳିତ କରି
ଅନ୍ଧବିଶ୍ୱାସ ଏବଂ ଅପସଂସ୍କୃତିର
ଯେତେସବୁ ପରଦା ହଟାଇ, ଗୃହାଙ୍ଗନା ପ୍ରଜ୍ଞାବତୀ ହୁଏ
ହେ କଳିଙ୍ଗ କନ୍ୟା !
ଥିଲଦିନେ ପ୍ରବାସିନୀ ସୁଦୂର ବର୍ମାରେ
କେବେ ତ ଭୁଲିନ ନିଜ ଜାତି ଦେଶକଥା
ସୁନ୍ଦରୀ, ଗୁଣବତୀ' ମୂର୍ତ୍ତିମନ୍ତ ସେବାର ପ୍ରତୀକ
ଯେଉଁ ସ୍ଥାନେ ରୁହ ହେଲେ ନିଶ୍ୱାସରେ ଓଡ଼ିଆର ଗନ୍ଧ
ଏବେ କିନ୍ତୁ ଶଙ୍କା ହୁଏ
ମାତୃଭାଷା ଓଡ଼ିଆର ଅସ୍ତିତ୍ୱକୁ ନେଇ
ଚାପି ହୋଇ ପଡ଼ିଛି ସେ ଭାର ସହି ସହି
ଯଶସ୍ୱିନୀ ଆଗୋ
ଆଉଥରେ ଜନ୍ମନିଅ ତୁମ ପ୍ରିୟ ଉତ୍କଳ ମାଟିରେ
ପଣନିଅ, ଏ ଭାଷା ବଞ୍ଚିବ ନିଶ୍ଚେ
ଯେତେଦିନ ହେଉଥିବେ ସୂର୍ଯ୍ୟ ଆତଯାତ ।

*L-୩/୩ ଖାରବେଳ ନଗର ୟୁନିଟ୍-୩, ଭୁବନେଶ୍ୱର*



# ଦ୍ୱିତୀୟ ଈଶ୍ୱର

*ସୁଷମା ମିଶ୍ର*

ମରଣ ହୁଏନା କେବେ ସ୍ରଷ୍ଟା ମାନସର
ମରଦେହ ଚିତାନଳେ ଭସ୍ମ ହେଲାପରେ
ମୃତ୍ୟୁକୁ ପରାସ୍ତ କରି
ଅମରତ୍ୱ ଲାଭ କରେ ଦ୍ୱିତୀୟ ଈଶ୍ୱର ।
ଉତ୍କଳ ଭାରତୀ ତୁମେ କୁନ୍ତଳା କୁମାରୀ
ତୁମର ମରଣ ନାହିଁ
ତୁମେ ଯେଣୁ ଦ୍ୱିତୀୟ ଈଶ୍ୱରୀ ।
ଲେଖନୀ ମୁନରେ ତୁମେ ଗଢ଼ି ଦେଲ
ଆପଣାର ବିଶ୍ୱ
ବିରାଜିତ ହୁଏ ଯହିଁ
ସତ୍ୟସ୍ୱପ୍ନ କଳ୍ପନାର ଛାୟାପଥ
ଭାବନାର ସୌର ମଣ୍ଡଳ
ପ୍ରଜ୍ୱଳିତ କରି ତୁମ ସୃଜନ ସମ୍ଭାର ।
ଭଳିଭଳି ମାନଚିତ୍ର ଆଙ୍କି ଦେଇ ମନଗହନରୁ
ଶବ୍ଦକୁ ରଞ୍ଜିତ କଲ କୋମଳ ଛନ୍ଦରେ
ଉଗାଳ ଭାବକୁ ଦେଇ ଘନ ଅନୁଭବ
ଜୀବନକୁ ପରଶିଲ ଶତ ମୂର୍ଚ୍ଛନାରେ ।
ପ୍ରୀତିଡାଲା ଧରି କେବେ ପ୍ରେମିକ ଅର୍ଚ୍ଚନା
ଆଉ କେବେ ପରମ ପ୍ରଭୁଙ୍କ ପାଇଁ,
ଚରମ ବନ୍ଦନା ।
'ଉଚ୍ଛ୍ୱାସ'ରେ ଉଚ୍ଛ୍ୱସିଲ ସୁଖ ଦୁଃଖ ରସାଳ ଗମ୍ଭୀର
'ଅଞ୍ଜଳି'ରେ ଭରିଦେଲ ପ୍ରୀତି ଆଉ ଭକ୍ତିର ସମ୍ଭାର
'ସ୍ଫୁଲିଙ୍ଗ'ରେ ଜାଳିଦେଇ ବହ୍ନିଶିଖା ଜାତୀୟ ଭାବର
ମାତୃଭୂମି ମା' ପାଇଁ ମାତୃସ୍ତବ ପାଠରେ ବିଭୋର ।
ସାହିତ୍ୟ ସାଧିକା ତୁମେ ସାହିତ୍ୟରେ
ଖେଳାଇଲ ନିଃସର୍ଗ ମାଧୁରୀ ।
ଗୀତିମୟ ଲେଖା ତୁମ ଛଳଛଳ ଢଟିନୀ ଯେପରି ।



# କୁନ୍ତଳା କୁମାରୀ

*ନୀରଦପ୍ରଭା ସିଂହ ସାମନ୍ତ*

ଝରା ଶେଫାଳୀ ମହକ ବିତରି---
ଝରିଗଲ ଧରାପରେ--
ଉକୁଟିଲା ଜ୍ୟୋତି ଅସୀମ ଆକାଶେ
ଅଗଣିତ ତାରା ମେଳେ ।।
ତୁମ ପ୍ରତିଭାର--ନାହିଁ ପଟାନ୍ତର
ତୁମେ କାଳଜୟୀ--କବି ଏ ମାଟିର--
ନାରୀ ହୃଦ ଚେତାବନୀ
ପ୍ରତି ଘରେ ଘରେ -ଦେଶ ବିଦେଶରେ
ଶୁଭେ ତବ ପଦ ଧ୍ୱନୀ--
କେତେ ଝଡ଼ ଝଞ୍ଜା-ଜୁଆର ଭଟାରେ
ପ୍ରାଣବିନ୍ଦୁ ସ୍ନିଗ୍ଧ - ସବୁଜ ପତରେ
ବିକଶିତ ଆମ୍ରଫୁଲ
ଅନନ୍ତ ପ୍ରେମରେ ବିଭୋଳିତ ହୋଇ
ଲଭିଲ ଜୀବନ ମୂଳ ।।

*ସମ୍ପାଦିକା*
*ଗଣା ସାହିତ୍ୟ ସଂସଦ*
*ଭୁବନ, ଢେଙ୍କାନାଳ*



# ବନ୍ଦନୀୟା

ମିନତି ଷଡ଼ଙ୍ଗୀ

ହୃଦୁଁ ଯାର ବିଗଳିତ ଦେଶପ୍ରୀତି ନୀର
ମାତୃଭାଷା ଭାସ୍ୱରିତ ଯା ମନ ମୁକୁର
ସେ ଉତ୍କଳ ବାଳା
କୁନ୍ତଳା କୁମାରୀ ସେହି ଭାବରେ ବିହ୍ୱଳା ।
ଜନସେବା ଥିଲା ଯାର ଜୀବନର ବ୍ରତ
ସୁଖ ଦୁଃଖ ଏକାକାର କରି ଅବିରତ
ତେଜି ମନୁଁ ଦ୍ୱନ୍ଦ
ସେବାଦାନେ ଲଭିଥିଲେ ଅନ୍ତରେ ଆନନ୍ଦ
ବିଶାଳ ହୃଦରେ କ୍ଷୁଦ୍ର ମାପିବା କ୍ଷମତା
କରିଲା ସଫଳ ଯା'ରେ ସରଳି ମମତା
ନିରେଖି ଶେଫାଳୀ
କବିତାର ଅଙ୍କେ ଥାପି ହୋଇଲେ ବାତୁଳୀ
ଉତ୍କଳର ସାରସ୍ୱତ ପାରାବାର ବୁକେ
ଅରପିଲେ ଅକୁଣ୍ଠିତ ସ୍ୱୀୟ ସୃଷ୍ଟି ମୁଖେ
ଉତ୍କଳ ଭାରତୀ
ସମ୍ମାନରେ ବିଭୂଷିତା ହୋଇଲେ ତତ୍ପତି ।
ପ୍ରମଦା ଗଗନ ବକ୍ଷେ ସେ ଯେ ଧ୍ରୁବତାରା
ପ୍ରମୋଦିତେ ରଚିଗଲେ ଗଦ୍ୟପଦ୍ୟ ଧାରା
ରମଣୀ ଗୌରବ
ବିଂଶକୋଳେ ସମ୍ଭୂତା ଯେ ଉତ୍କଳ ବିଭବ ।
ଓଡ଼ିଆ ମମତା ହୃଦେ ବହି ଅନୁକ୍ଷଣ
ସ୍ୱକୀୟ ସଂତତି ନାମ ରଖିଲେ ତକ୍ଷଣ
କଳିଙ୍ଗ କୁମାରୀ
ଯଶବୃକ୍ଷେ ପ୍ରସ୍ଫୁଟିତ କମନୀୟ କଳି ।
ଭାରତୀ ମନ୍ଦିର ଅଙ୍କ ସୁଦକ୍ଷ ବିଜ୍ଞାଣୀ
କୃତି ଥାପି କୀର୍ତ୍ତିସ୍ତମ୍ଭ ରଚିଗଲେ ପୁଣି
ସେ ଯେ ବନ୍ଦନୀୟା
ଯୁଗେ ଯୁଗେ ସ୍ମରୁଥିବ ଏ ଜାତି ଓଡ଼ିଆ ।

ଏ.ଏଲ୍ - ୬୨
ଭୀମଟଙ୍ଗି, ଭୁବନେଶ୍ୱର - ୨



# ଭେଟ

ପ୍ରତିଭା ପରିଡ଼ା

ଏମିତି ଥକିଲା ଦିଶୁଛ ଯେ !
ତୁମେ ତ ବରଫଗଦାରେ
ପଦ୍ମ ଖେଳେଇବା ମଣିଷ...
ତୁମର ତ ଜଳନ୍ତା ନିଆଁରେ
ଫୁଲଝରି ନଚେଇବାର ମୁହାଁସ...
ଏମିତି
ଭାରି ଭାରି ଆଖି ମୁହିଁ କାହିଁକି କରିଛ !... ।
ଏଇକ୍ଷିଣା ତ ଶୁଭୁଥିଲା ଆରପାଖରେ
ଫୁଲମାଳ, ମାନପତ୍ର, ସମ୍ଭାଷଣ...
ତୁମଠି ଆଶ୍ରା ନେଇଥିବା ଛେଉଣ୍ଡ ଝିଅଟିର
ବାହାବିଦ୍ୟା କାନ୍ଦଣା,
ପୁଣି କେଉଟ ସାହି ଗଳିରେ
ଶଂଖ, ହୁଳହୁଳି, ଉଲ୍ଲାସ-ବନ୍ଦାଣ...
ଏବେ ତ ବସିଥିଲ
ରଘୁ ଅର୍ଚ୍ଚିତ ମଥାରେ ପାପୁଲି ଥାପି;
ତୁଚ୍ଛା କଳିତୁଣ୍ଡୀ ବୋହୁ ଭଳି
ଅଣ୍ଟାରେ ପିନ୍ଧାକାନି ଭିଡ଼ି
କ୍ରୋଧ ବର୍ଷୁଥିଲ ଯେ,
ଥମ୍ ଥମ୍ ହୋଇ ପଡୁଥିଲା ସାରା ଆକାଶ,
ହୁଗୁଳା ହୋଇ ଯାଉଥିଲା ମାଟି,
ପୁଣି ଥରୁଥିଲା
ଖୋର୍ଦ୍ଧାରୁ ଦିଲ୍ଲୀ ଯାଏଁ ବାହୁଡ଼ା ପବନ-
ଜାଣିଛ କି ?
କେମିତି କଟୁଛି ଏବେ ମୋର ଦିନ ?-
ଏବେ ମୋର ନୀରବତାର ବନବାସ...
ବୋଧେ ବଧିରା ହୋଇଯାଉଛି ଛାତି

ଏବେ ଫାଙ୍କା ଫାଙ୍କା ମୋର ଭାଗ୍ୟଫଳ...
ନା' ବାରିପାରୁଛି ମିଠା ଗନ୍ଧ
ନା' ଘା' ଘାଉଡ଼ !
ଆଉ ଏତିକି ବେଳକୁ ହିଁ ଦେଖୁନା
ତମରି ସାଂଗରେ ଭେଟ !
ସାମ୍ନାରେ ଟଳୁଛି ତୁମର ଶୁଖିଲା ଦେହ
ଓଦା ଓଦା ଆଖି
ବିକ୍ଷୁବ୍ଧ ଅର୍ଥର ଓଠ
ଝିଅ ଲୋ !
ଚାରିଆଡ଼େ ଖାଲି କଂସେଇ ମାଳ ମାଳ...
ଛୁରୀ, ଭୁଜାଲି ଖଣ୍ଡାର ଉଦ୍ଦଣ୍ଡ ଖେଳ...
କଲିଜାରେ ଚୋଟ,
ଚୋଟ ଦେଖି
ଛାତିରେ/ମଥାରେ...
ସାରା ଦେହ ତ କାଲୁବାଲୁ କେଉଁକାଳୁ
ଲୁଣିଆ ଲହୁରେ...
କମାର ଭାଟିର ନାଲିଆ ଲୁହା ଭଳି
ଭାରି ତତଲା ଏ ଜୀବନ ସତରେ !
ମତେ ହସ ଲାଗୁଛି-
ସବୁବେଳେ ତ ତୁମର ରାଗ ନାକ ଅଗରେ...
ଶେଷକୁ ଅଠା ବୋଳିଲ
ବିଚରା କଂସେଇ କପାଳେ...-
କଂସେଇ ତ ଠୋ ଠୋ ଟାଙ୍ଗର ଭୂଇଁ
ଦୁବଘାସ କଅଁଳ ନାହିଁ ତା ପନ୍ଝାରେ...
ସୂର୍ଯ୍ୟ ଉଇଁବାର ଦିଗ ଜାଣିପାରେନି
ଚଢ଼େଇର ଡ଼ାକଟେ ଶୁଣି ପାରେନି
ଆଲୁଅ, ପାଣି ଲୁହ ଅଭିମାନ
କିଛି ବି ଭେଦେନି ତା ଗଣ୍ଡା ଚମଡ଼ାରେ...
ଛୁରୀ ଶାଣ କରୁ କରୁ ହିଁ
ବିଚରାର ଟାଆଁସିଆ ଭୋର ସଞ୍ଜ
ବିତିଯାଏ ମାଦଳ ପଣରେ...

ସତ କହିଲ
ରୁନ୍ଧିଲା ଛାତିର ଧୂଆଁ
ତାତି ଫିଙ୍ଗିବାର କୋହ ଛଡ଼ା
କେଉଁ ରାସ୍ତାର ଠିକଣା ବା ଲେଖାଥାଏ
କଂସେଇ ମାନଙ୍କ ପାହୁଣ୍ଡ ତଳେ ?----
କଂସେଇ ମାନଂକୁ କାହୁଁ ବା ଜଣା
ଏ ପୃଥିବୀର ସବୁତକ ଆର୍ତ୍ତି, ଶୋଷ, କାଂଗାଳ
ପଣ
କେମିତି ଭିଜିଯାଏ
ବିଶ୍ୱାସର ଚିକ୍‌ଚିକ୍ କାକର ଠୋପାରେ !! -
ତୁମେ ସିନା ଆବେଗରେ ଲୁତୁପୁତୁ ସବୁକାଳେ...
ସହିପାରନି ଗଛରୁ ପତ୍ରଟେ ଖସିଲେ...
ଅନ୍ଧ ପାଲଟିଯାଅ,
ଆଖି ସାମ୍ନାରୁ ଆପଣାପଣର ଛବିଟେ ଘୁଞ୍ଚିଲେ-
ତୁମେ ଏତେ ନରମ ଯେ,
ଦୁନିଆ ଯାକର କଣ୍ଟା ହିଁ
ବିନ୍ଧି ହେଉଥାଏ ତୁମ କଅଁଳ ନିୟତିରେ -
ଏତିକି ଜାଣିନ
ନା, ଜାଣିସିଥାଣି ହେଉଛ ?
କଂସେଇ ମାନଙ୍କର ଦୁଃଖ କ'ଣ କମ୍ ?
କଂସେଇର ତ ଆହୁରି ଆହୁରି ଦୁଃଖ...
ଆଗରେ/ପଛରେ/ଉପରେ/ତଳେ
ରକ୍ତ ନିଆଁର ଡ଼ହ ଡ଼ହ ନର୍କ... -
ଆସ,
ହାତ ଧରାଧରି ହୋଇ
ଏଠି ଘଡ଼ିଏ ବସିଯିବା...
ଯେଉଁଠି ଯାହା ତାତି ଅଛି ଯେତେ
ଅଣ୍ଟିରେ ସାଉଁଟିନେବା -

କ୍ୱାଟର ନଂ - ଆଇ. ଭି ଏନ୍ - ୩୫
ୟୁନିଟ୍ - ୪, ଭୁବନେଶ୍ୱର - ୧



# THE STAR THAT NEVER SETS

*Chandramoni Narayanaswamy*

She came to the world with the century
And had already passed into history
Before the century moving at super fast pace
Had run even half its race

Her birth was like the advent
Of a new star on the firmament
A star of unusual lustre
Of brightness never seen before
Whose luminous rays could penetrate
And like diamond needles tear apart
Thick clouds of despair and tear. stained mist
Shedding light through layers and layers of dust

She was a flower with thorns and bristles around
Doomed to wither and flutter to the ground
All too soon but a fragrant flower
Whose smell had merged and stayed for ever
In the soil where it had bloomed
To be smelt by the wind all the year round

She was Bhakti and shakti, reble and patriot
A votaress of Saraswati, His eternal sweet-heart
A star that never sets but ever guides
With such perennial glow. such silver rays
That all the poets can stand up as one and say
We bow to you, Kuntala. on this your hundredth birthday.

